ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ



*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**



**୬୬ ବର୍ଷ, ଅଷ୍ଟମ ସଂଖ୍ୟା**
**ମାର୍ଚ୍ଚ, ୨୦୧୭**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**

*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* **: ୯୮୬୧୦୬୪୮୯୧,**
**୨୪୨୨୫୯୭, ୯୭୭୬୩୨୬୫୬୩**
*email :*
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗର ଲେଖକ--

**ଶୁଭେଂଦ୍ର ମୋହନ ଶ୍ରୀଚଂନ୍ଦନ ସିଂହ, ସାଗର ସୌରଭ ମହାନ୍ତି, ଜଗବନ୍ଧୁ ବେହେରା ।**

**ଗଳ୍ପ ଓ ଜୀବନୀ**



**କବିତା**



**ଜ୍ଞାନବିଜ୍ଞାନ**



**ମନୋରଞ୍ଜନ**



## ଆମ ଚିଠି ମୁଣିରୁ

**ଉତ୍ତରପଡ଼ା, ଅନୁଗୁଳରୁ ନରେଶ ଚନ୍ଦ୍ର ବେହେରା**-- ଏ ମାସ ସଂସାର ପ୍ରଚ୍ଛଦପଟ ବେଶ୍ ଆକର୍ଷଣୀୟ ହୋଇଛି । ଭିତରର ପ୍ରତ୍ୟେକ ଲେଖା ମନକୁ ଛୁଇଁ ଛୁଇଁ ଯାଉଛି । ଏହା ସମସ୍ତଙ୍କ ପାଇଁ ଏକ ଆକର୍ଷଣୀୟ ପତ୍ରିକା ।

**ଓଡ଼ଗାଁ, ନୟାଗଡ଼ରୁ, ରାଜକିଶୋର ସାହୁ**--

ସଂସାର ଭିତରେ ଘର କରିଥିଲେ
ପଥର ପଡ଼ିଲେ ସହି
'ସଂସାର' ଶବଦ- ଧନ୍ଦାଟି କରିଲେ
ମଗଜ ଦିଅଇ ଦହି ।

ସଂସାର ଦୀର୍ଘଜୀବୀ ହେଉ–ପ୍ରଭୁ ଜଗନ୍ନାଥଙ୍କ ନିକଟରେ ଏତିକି ପ୍ରାର୍ଥନା ।

**ଢେଙ୍କାନାଳରୁ ସୁଶୀଳ କୁମାର ନନ୍ଦ**-- ଏହାର ପ୍ରତ୍ୟେକ ଲେଖା ସାରଗର୍ଭକ ଓ ଆକର୍ଷଣୀୟ । ପ୍ରକୃତରେ ଏହା ସୁନାମୁଦ୍ରାଟିଏ । ଖାଲି ଶିଶୁ-କିଶୋର ନୁହନ୍ତି, ବଡ଼ମାନଙ୍କ ପାଇଁ ମଧ୍ୟ ଏଥିରେ ପ୍ରଚୁର ଉପାଦାନ ଭରିରହିଛି ।

**ଚମ୍ପୁଆ, କେନ୍ଦୁଝରରୁ ରାସେଶ୍ୱର ମହାନ୍ତ**-- ଚଳିତ ସଂଖ୍ୟାରେ ସୁନାମୁଣ୍ଡା, ଅଧାବାକ୍ୟ ବି କାମରେ ଆସେ ଗଳ୍ପ ଦୁଇଟି ଶିକ୍ଷଣୀୟ । ମାତ୍ର 'ଜହ୍ନ' କବିତା ପାଇଁ କବିଙ୍କୁ ମୋର ବିଶେଷ କୃତଜ୍ଞତା । 'ମାନବଜାତି ହୁଏ ନିଷ୍ଠୁର' ଧ୍ୱଂସମୁଖୀ ସମାଜ ପାଇଁ ଏକ ସତର୍କ ଘଣ୍ଟି ।

**ପୁଆଁଣିଆ, ଗମ୍ଭାରୀଡିହି, ନୟାଗଡ଼ରୁ ରସାନନ୍ଦ ଘଡ଼େଇ**-

ହେ ରାମ ହେ କୃଷ୍ଣ
ଧନ୍ୟ ତୁମର ସଂସାର
ଜ୍ଞାନ, ବିଜ୍ଞାନ, ସାହିତ୍ୟ
ଗଣିତର ଗନ୍ତାଘର ।
ସଭିଙ୍କୁ କିଣି ନେଉଛି
ଛୋଟ ପତ୍ରିକା
ପଢ଼ନ୍ତୁ ସର୍ବଦା ଏହା
ହେ ପାଠକ ପାଠିକା ।



## ଅଭିନନ୍ଦନ



ଆମର ପ୍ରିୟ ଲେଖକ ତଥା ଶିଶୁସାହିତ୍ୟିକ **ଶ୍ରୀ ସଂଗ୍ରାମ କେଶରୀ ପୃଷ୍ଟି**ଙ୍କୁ 'ତେଲିଙ୍ଗିବାଜା' ତରଫରୁ 'ଗଳ୍ପସମ୍ମାନ'ରେ ସମ୍ବର୍ଦ୍ଧିତ କରାଯାଇଛି ।

ତାଙ୍କର ଏ ଗୌରବ ଓ କୃତି 'ସଂସାର' ପରିବାରକୁ ଗୌରବାନ୍ୱିତ କରିଛି । ତାଙ୍କର ଉତ୍ତରୋତ୍ତର ଉନ୍ନତି ହେଉ ଏବଂ ତାଙ୍କର ଲେଖକୀୟ ଜୀବନ ଜାଜ୍ୱଲ୍ୟମାନ ରହୁ– ଈଶ୍ୱରଙ୍କୁ ଏତକି ପ୍ରାର୍ଥନା ସହ ହାର୍ଦ୍ଦିକ ଅଭିନନ୍ଦନ ।

--**'ସଂସାର'** ପରିବାର

---

## ସଂସାରର ନିୟମାବଳୀ

୧ । **ଟଙ୍କା (ଡାକ କିମ୍ବା ବ୍ୟାଙ୍କ ମାଧ୍ୟମରେ) ପଠାଇବାବେଳେ ଗ୍ରାହକ ନମ୍ବର ଓ ପିନ୍‌କୋର୍ଡ୍ ସହ ଠିକଣା ଲେଖିବାକୁ ବା ଫୋନ୍ ଦ୍ୱାରା ଜଣାଇବାକୁ ଅନୁରୋଧ। ଏହାଦ୍ୱାରା ସେମାନଙ୍କ ସହିତ ଯୋଗାଯୋଗ କରିବା ସମ୍ଭବ ହେବ। କେତେକ ସମୟରେ ଟଙ୍କା ପଠାଇଥିବା ବ୍ୟକ୍ତିଙ୍କ ପରିଚୟ ନ ପାଇବାରୁ ପତ୍ରିକା ପଠାଇବା ସମ୍ଭବ ହୋଇପାରୁନାହିଁ ।**

୨ । ବିଜ୍ଞାପନ ଓ ଏଜେନ୍‌ସି ପାଇଁ ପରିଚାଳକଙ୍କୁ ଯୋଗାଯୋଗ କରନ୍ତୁ ।

୩ । ୧୦ଖଣ୍ଡରୁ କମ୍ ପତ୍ରିକା ପାଇଁ ଏଜେନ୍‌ସି ଦିଆଯାଏ ନାହିଁ ।

**ଏ ମାସ ପ୍ରଚ୍ଛଦରେ ପୋଲାଣ୍ଡର ସେଣ୍ଟ ମେରୀ ଚର୍ଚ୍ଚର ଭିତରର ସାଜସଜ୍ଜାର ଚିତ୍ର ପ୍ରଦତ୍ତ ।**

# ପୃଥିବୀରୁ ଦେବଲୋକ

ଡାକ୍ତର ରତ୍ନାକର ମଲ୍ଲିକ

ସେଦିନ ଥିଲା ଗ୍ରୀଷ୍ମଋତୁ । ଦେବର୍ଷି ନାରଦ ଆକାଶପଥରେ ଯାଉ ଯାଉ ଦେଖିଲେ ପୃଥବୀରେ ବହିଯାଉଛି କଲ୍ଲୋଳମୟୀ ନର୍ମଦାର ଧାରା । ତାର କାଚକେନ୍ଦୁ ଜଳରେ ଭସାମେଘର ସୁନ୍ଦର ଚିତ୍ର ଦିଶୁଛି । ଆଃ କି ସୁନ୍ଦର ! ତାର କୂଳେ କୂଳେ ଶ୍ୟାମଳ ବୃକ୍ଷଲତା, ମୀନରଙ୍କା ପକ୍ଷୀମାନଙ୍କର କଳରବ, ଧୀର ପବନରେ ବନଫୁଲର ସୁଗନ୍ଧ ବେଶ୍ ଆକର୍ଷଣ କଲା । ତେଣୁ ସେ ଆଗକୁ ନ ଯାଇ ସେଇଠି ଓହ୍ଲାଇପଡ଼ିଲେ ।

ଗୋଟିଏ ଅଶ୍ୱତ୍ଥ ବୃକ୍ଷର ଛାଇ ତଳେ ଦଣ୍ଡେ ଠିଆ ହୋଇ ଚାରି ଆଡ଼କୁ ଚାହିଁଲେ । ଦେଖିଲେ ନର୍ମଦା ବହିଯାଉଛି । ଶାନ୍ତା, କାନ୍ତା, କମନୀୟ ନ...ର୍ମ...ଦା ।

ନାରଦ ହାତଯୋଡ଼ି ପ୍ରଣାମ କରି କହିଲେ, "ଦେବୀ ! ମୁଁ ଧନ୍ୟ ହେଲି । ପବିତ୍ର ହେଲି ଆପଣଙ୍କର ଦର୍ଶନ ପାଇ ।''

ଏକଦା ଏଇ ପୃଥିବୀ ଫାଟି ଶୁଖିଯାଇଥିଲା । ପୃଥିବୀବାସୀ ଖୁବ୍ କଷ୍ଟ ପାଇଲେ । ବ୍ରହ୍ମା ଏ ଦୃଶ୍ୟ ଦେଖି କାନ୍ଦି ପକାଇଲେ । ତାଙ୍କ ଆଖିର ଦୁଇଟୋପା ଲୁହ ଏଇ ମାଟି ଉପରେ ପଡ଼ିଥିଲା । ଗୋଟିଏ ଟୋପା ଲୁହରୁ ଏଇ ନର୍ମଦା ଓ ଅନ୍ୟ ଟୋପାରୁ ସୋଣ ନଦୀ ବହିବାକୁ ଲାଗିଲେ ।

ଗୋଟିଏ ନଦୀର ଜନ୍ମ ପୃଥବୀର ମଙ୍ଗଳ ପାଇଁ ହୋଇଥାଏ । ସେ ଦେବୀ, ପରୋପକାରିଣୀ, ସେ ନାରୀ ମଙ୍ଗଳମୟୀ, ପୁଣ୍ୟତୋୟା । ତାର ସ୍ୱଚ୍ଛ, ସଲିଳ ପ୍ରାଣୀର ଆତ୍ମାକୁ ଅମୃତ ପ୍ରଦାନ କରିଥାଏ । ସାଗର ମନ୍ଥନ ବେଳେ ଏହି ଅମୃତ ବାହାରିଥିଲା । ଯେଉଁ ଅମୃତକୁ ସ୍ୱର୍ଗର ଦେବତାମାନେ ଖାଇ ଅମର ହୋଇଗଲେ; କିନ୍ତୁ ଯୁଦ୍ଧରେ ହାରିଗଲେ ।

କି ବିଚିତ୍ର ଏ କଥା ! କ୍ଷୀର ସମୁଦ୍ରର ଏପାଖରେ ଥିଲେ ଦେବତା ଆଉ ଅନ୍ୟ ପାଖରେ ଥିଲେ ଦାନବ । ମନ୍ଦରାଚଳ ଗିରିଶୃଙ୍ଗରେ ବାସୁକି ନାଗର ଦଉଡ଼ି । ସମୁଦ୍ର ମନ୍ଥନ ହେଲା । ଅମୃତ ବାହାରିଲା ଆଉ ତା ସହିତ ଯାହା ଯାହା ବାହରିଲା, ସେ ସବୁର ଅଧିକାରୀ ହେଲେ ସ୍ୱର୍ଗର ଦେବତାମାନେ । ଯାହା ହେବାର କଥା, ତାହା ହିଁ ହେଲା । ଦାନବମାନେ ସମୁଦ୍ର ମନ୍ଥନରୁ କିଛି ନ ପାଇ ବିମୁଖ ହେଲେ । ସେମାନଙ୍କ ହୃଦୟରେ ପ୍ରତିଶୋଧର ବହ୍ନି ଜଳୁଥିଲା । ସେମାନେ ସ୍ୱର୍ଗର ଦେବତାମାନଙ୍କଠାରୁ ପୃଥକ ହୋଇଗଲେ ଆଉ ମାନବମାନେ ରହିଗଲେ ଧୂଳିଧୂସର ପୃଥବୀର ମାଟିର ମଣିଷ ହୋଇ ।

ଦୀର୍ଘନିଶ୍ୱାସ ପକାଇ ଭାବି ଚାଲିଥିଲେ ଦେବର୍ଷି ନାରଦ । ଅକସ୍ମାତ୍ ତାଙ୍କ ମନ ଭିତରେ ଆସିଲା ଗୋଟିଏ ପ୍ରଶ୍ନ । ତାହା ହେଲା ପୃଥବୀର ମଣିଷ ତଥା ଜୀବଜନ୍ତୁ-ମାନେ ଏତେ ଅଭାବ, ଅନଟନ ତଥା ଦୁଃଖରେ ଜର୍ଜରିତ ଥିବାବେଳେ ସ୍ୱର୍ଗ ରାଜ୍ୟର ଦେବତାମାନେ ଏତେ ଭୋଗବିଳାସରେ ଅଛନ୍ତି କାହିଁକି ? କ'ଣ ଦେବତାମାନେ ପୃଥିବୀବାସୀଙ୍କ ପ୍ରତି ଅନ୍ୟାୟ କରିନାହାନ୍ତି ?

ତାଙ୍କ ମନ ଭିତରେ ଏଇ ପ୍ରଶ୍ନ ବାରମ୍ବାର ଆନ୍ଦୋଳିତ ହେବାକୁ ଲାଗିଲା । ତେଣୁ ସେ ଭାବିଲେ ଏଇ ମୁହୂର୍ତ୍ତରେ ଭଗବାନ ବିଷ୍ଣୁଙ୍କୁ ସାକ୍ଷାତ କରି ଏଇ କଥା ପଚାରିବେ । "ନାରାୟଣ.....ନାରାୟଣ" ଉଚ୍ଚାରଣ କରି ବୀଣା ବାଦନ କଲେ ଏବଂ ଚାଲିଲେ ସେ ସ୍ୱର୍ଗ ଆଡ଼କୁ ।



ବୈକୁଣ୍ଠପୁରରେ ପହଞ୍ଚି ଭଗବାନ ଶ୍ରୀବିଷ୍ଣୁଦେବଙ୍କୁ ବିନମ୍ର ପ୍ରଣାମ କରି ବୀଣା ବାଦନ କରିବାକୁ ଲାଗିଲେ । ଶ୍ରୀବିଷ୍ଣୁଦେବ ନାରଦଙ୍କ ଆଗମନ ବିଷୟରେ ପଚାରିଲେ । ନାରଦ ଅତ୍ୟନ୍ତ ବିନମ୍ର ଏବଂ ମଧୁର ଭାବରେ କହିଲେ, "ପ୍ରଭୁ ! ଆପଣ ଏ ତିନିଭୁବନର ସ୍ରଷ୍ଟା ଏବଂ ସମସ୍ତ ପ୍ରାଣୀଙ୍କର ଭାଗ୍ୟ ବିଧାତା !

ମୁଁ ପୃଥିବୀପୃଷ୍ଠରୁ ବର୍ତ୍ତମାନ ଆସିଛି । ପୃଥିବୀର ମଣିଷମାନେ ଦୁଃଖ, ଦାରିଦ୍ର୍ୟର ନିବିଡ଼ କଷାଘାତ ଭିତରେ କିପରି ମରି ମରି ବଞ୍ଚିଛନ୍ତି । ଅଭାବ, ଅନଟନର ସଂକଟ ଭିତରେ କାହାକୁ ଅନ୍ନ ମିଳୁନାହିଁ ତ, କାହାକୁ ବସ୍ତ୍ର । କିଏ ଘୋର ରୋଗବ୍ୟାଧିରେ ଅକାଳରେ ପ୍ରାଣ ହରାଉଛି ତ କିଏ ବାର୍ଦ୍ଧକ୍ୟର ଅନ୍ତିମ ସୋପାନରେ ଚିତ୍କାର କରୁଛି । ଗୋଟିଏ ପାଖରେ ସ୍ୱର୍ଗର ଦେବତାମାନଙ୍କ ପାଇଁ ଅଳକାପୁରୀଠାରୁ ନନ୍ଦନକାନନ, ଶିବପୁରୀଠାରୁ ଉର୍ବଶୀ, ମେନକା ଯାଏଁ ଦେବୋପମ ବିଳାସବ୍ୟସନର ବ୍ୟବସ୍ଥା ଥିବାବେଳେ ପୃଥିବୀବାସୀଙ୍କ ପାଇଁ କ'ଣ ଅଛି ? କେବଳ ଦୁଃଖ, ବ୍ୟାଧି, ଜରା, ଯନ୍ତ୍ରଣା ଆଉ ଜନ୍ମମୃତ୍ୟୁର କାଳଚକ୍ର । ପାହାଡ଼ ଉପରେ ପାହାଡ଼, ମରୁଭୂମିର ଉତ୍ତପ୍ତ ବାଲୁକା । ଲୁହର କାଳିରେ କଲମ ବୁଡେଇ ଆପଣ କ'ଣ ଏଇଆ ଲେଖିଛନ୍ତି ଏମାନଙ୍କର କରୁଣ ଗାଥା ?

ଆଉ କେତେଦିନ ପ୍ରଭୁ ଦାରୁଣ ଦୁଃଖର ପଦାଘାତ ସହୁଥିବ ଏ ମଣିଷ– ଆଉ କେତେ ଦିନ ! ତାକୁ ମୁକ୍ତି ଦିଅ । ତାକୁ ଅମର କରିଦିଅ । ତାକୁ ଅମୃତ ଦିଅ !"

ଗୋଲକବିହାରୀ ବିଷ୍ଣୁଦେବ ମୃଦୁ ହସଟିଏ ହସିଲେ । କହିଲେ, "ବତ୍ସ ! ତୁମେ ଯାହା କହିବାକୁ ଚାହିଁଛ, ତାହା ମୁଁ ହୃଦୟଙ୍ଗମ କରୁଛି । ମୃତ୍ୟୁକୁ ପ୍ରତୀକ୍ଷା କରିଥିବା ମଣିଷ ତାର ଦିବ୍ୟଦେହ ତ୍ୟାଗ କରି ଏ ସ୍ୱର୍ଗକୁ ଫେରିଆସେ । ସେଥିପାଇଁ ତାକୁ ବର୍ଷ ବର୍ଷ ଧରି ଅପେକ୍ଷା କରିବାକୁ ପଡ଼ିଥାଏ । ଏଠାରେ ତାର ପାପପୁଣ୍ୟର ବିଚାର ହୁଏ । କାହାକୁ ପୁନର୍ଜନ୍ମ ମିଳେ ତ କାହାକୁ ନରକ । ଏଇ ବ୍ୟବସ୍ଥା କେଉଁ ଅନାଦି କାଳରୁ ଚାଲି ଆସିଛି ।"

ନାରଦ କହିଲେ, "ପ୍ରଭୁ ! ମୁଁ ଏ ଆଦିମ ଅନ୍ଧକାରର ତୋରଣ ଭାଙ୍ଗିଦେଇ ଆଉ ନବଯୁଗର ନୂତନ ସୂର୍ଯ୍ୟକୁ ଆବାହନ କରିବାକୁ ଚାହୁଁଛି । ସ୍ୱର୍ଗର ସଂଚିତ ଥିବା ଆନନ୍ଦ, ପ୍ରେମ ଆଉ ଅମୃତକୁ ମୁଁ ବାଣ୍ଟିଦେବାକୁ ଚାହେଁ ପୃଥିବୀର ମଣିଷମାନଙ୍କ ଭିତରେ ।

ଶ୍ରୀବିଷ୍ଣୁଦେବ କହିଲେ, "ବାଃ– ଖୁବ୍ ସୁନ୍ଦର ବିଚାର । ତୁମ ବିଚାରକ୍ରାନ୍ତି ପୃଥିବୀବାସୀଙ୍କ ପାଇଁ ସ୍ୱର୍ଗର ଦ୍ୱାର ଖୋଲିଦେବ । କେବଳ ଦେବତାମାନେ ଯେ ଅମର ହେବେ ତାହା ନୁହେଁ, ତା' ସହିତ ଅମର ହେବେ ସମସ୍ତ ପ୍ରାଣୀଜଗତ । ତୁମ ବିଚାରବୋଧ ଆଗରେ ସମସ୍ତ ଦେବଲୋକ ମଥାନତ କରିବ । ତେବେ ଯାଅ ବତ୍ସ ଯାଅ, ଏଇ ମୁହୂର୍ତ୍ତରେ ପୃଥିବୀକୁ ଯାଅ । ଯାହାକୁ ପାଇବ ପଶୁପକ୍ଷୀ ଅଥବା ମନୁଷ୍ୟକୁ ନିଜ ସାଥିରେ ନେଇ ଆସ ।"

ନାରଦ ଶ୍ରୀବିଷ୍ଣୁଙ୍କ କଥା ଶୁଣି ପ୍ରସନ୍ନ ଚିତ୍ତରେ କହିଉଠିଲେ, "ବିଷ୍ଣୁଦେବଙ୍କର ଜୟ ହୋ, ଜୟ ହୋ ।"



ନାରଦ ମୁନି ବୀଣାବାଦନ କରି ପୃଥିବୀ ପୃଷ୍ଠରେ ଓହ୍ଲାଇ ପଡ଼ିଲେ। ଦେଖିଲେ ଭିକାରିଟିଏ ଚିତାତିଳକ ହୋଇ ଭିକ୍ଷା ମାଗିବାକୁ ଯାଉଛି। ପଛରୁ ଡାକଦେଲେ ନାରଦ, "ହେ ଭିକାରି ଟିକେ ଶୁଣ !" ଭିକାରି ଅଟକିଗଲା। ଦେଖିଲା କେହି ଜଣେ ସାଧୁବାବା ଡାକୁଛନ୍ତି।

ନାରଦ ତା ପାଖକୁ ଯାଇ ହସ ହସ ମୁହଁରେ କହିଲେ, "କ'ଣ ମତେ ଚିହ୍ନିପାରୁଛ ?" ସେ କହିଲା, "ନା, ଆପଣ କିଏ ?"

"ମୁଁ ନାରଦ ମୁନି। ଦେବଲୋକରୁ ଆସିଛି।" ଭିକାରି ତାଙ୍କ ପାଦତଳେ ପଡ଼ିଗଲା। ନାରଦ ତାକୁ ତଳୁ ଉଠାଇ କହିଲେ, "ବତ୍ସ! ଉଠ। ମୁଁ ସ୍ୱର୍ଗରୁ ଆଜି ତୁମ ପାଇଁ ସୁସମାଚାର ଆଣିଛି।"

"ତୁମେ ଏ କଥା ଜାଣିଛ ଯେ ପ୍ରାଣୀର ମୃତ୍ୟୁ ପରେ ସେ ନିଜର ଦେହ ଛାଡ଼ି ପବନ ରୂପରେ ସ୍ୱର୍ଗକୁ ଯାଏ। ସେଠାରେ ତାର ପାପପୁଣ୍ୟର ବିଚାର ହୁଏ। କିନ୍ତୁ ମୁଁ ଆସିଛି ତୁମକୁ ସ୍ୱଦେହରେ ସ୍ୱର୍ଗକୁ ନେଇଯିବା ପାଇଁ। ସ୍ୱର୍ଗରେ ସମସ୍ତ ସୁଖ, ଶାନ୍ତି, ଆନନ୍ଦ ଏବଂ ଐଶ୍ୱର୍ଯ୍ୟ ପ୍ରାପ୍ତ ହେବ। କ'ଣ ମୋ ସହିତ ଯିବା ପାଇଁ ରାଜି ତ ?"

ଭିକାରି ଚିନ୍ତାମଗ୍ନ ହୋଇ ଉତ୍ତରଦେଲା, "ପ୍ରଭୁ ! ମୋର ଯିବା ପାଇଁ ଇଚ୍ଛା ଅଛି; କିନ୍ତୁ ପାଦ ମୋର ଅଟକିଯାଉଛି। ଏଇଥିପାଇଁ ଯେ ମୁଁ ଅତି ଗରିବ ଭିକାରୀ। ମୋର ଦୁଇଟି କନ୍ୟା ବିବାହ କରିନାହାନ୍ତି। ମହାଜନଙ୍କ ଠାରୁ ଟଙ୍କା କରଜ ଆଣିଛି। ଘୋର ଅଭାବ, ଅନଟନ ମଧ୍ୟରେ ମୁଁ ବଞ୍ଚିଛି। ଭିକ୍ଷା ମାଗି ଯାହା ପାଏ, ସେଥିରେ ସଂସାର ଚଳାଏ। ମୁଁ ଯଦି ଆପଣଙ୍କ ସହ ସ୍ୱର୍ଗକୁ ଯିବି, ଏ ସଂସାରକୁ କିଏ ଚଳାଇବ ? ଆପଣ ବିଚାର କରନ୍ତୁ। ପ୍ରତିଦିନ ସଂଧ୍ୟାରେ ଘରକୁ ଫେରି ସେମାନଙ୍କ ମୁହଁରେ ଆହାର ଦିଏ। ଖୁସି ହୁଏ। ରାମନାମ ହିଁ ମୋର ଭରସା। ସେଇଥିପାଇଁ ତୁଳସୀ ଦାସ କହନ୍ତି–

"ସୋଇ ଗୁଣଜ୍ଞ ସୋଇ ବଡ଼ା ଭାଗୀ
ଯୋ ରଘୁବୀର ଚରନ ଅନୁରାଗୀ।"

"ମୁନିବର ! ଏ ମାୟାର ଜଂଜିରକୁ ତୁଟାଇ ମୁଁ କ'ଣ ନିଜ ଇଚ୍ଛାରେ ସ୍ୱର୍ଗକୁ ଯାଇପାରିବି ? ମୁଁ ଅକିଞ୍ଚନ। ମୋତେ କ୍ଷମା କରନ୍ତୁ ଗୋସାଇଁ। ମୁଁ ସ୍ୱର୍ଗକୁ ଯବା ପାଇଁ ଉପଯୁକ୍ତ ନୁହେଁ।" ନାରଦ ଭିକାରିଠାରୁ ଏଇ ଉତ୍ତର ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ମନେ ମନେ ଭାବିଲେ– ଏଇ ଲୋକଟା ପାଗଳ। ଯେତେବେଳେ ସବୁ ସୁଖ ତା ପାଦ ତଳକୁ ଆସୁଛି, ସେ ପାଦରେ ଠେଲି ଭିକ୍ଷା ମାଗି ଯାଉଛି।

ଧନ୍ୟରେ ମଣିଷ ! ତୋ ପାଖର ସ୍ୱର୍ଗର ସୁଧା ମଧ୍ୟ ପିତା। ଯା, ଶୁଷ୍କ ତୃଣ ପରି ପାଦରେ ପାଦ ଛନ୍ଦି ଏ ମାଟିରେ ପଡ଼ିଥା'। ନାରଦ ମୁନି ବୀଣା ବଜାଇ କହିଉଠିଲେ, "ନା...ରା...ୟ...ଣ ନା...ରା...ୟ...ଣ।"

ଦେବର୍ଷି ଉଦାସ ହୋଇ ସେଠାରୁ ଫେରିଲେ।

**(କ୍ରମଶଃ)**

*ତରାଣ୍ଡୋ, ବାରୁଅ, କେନ୍ଦ୍ରାପଡ଼ା- ୭୫୪୨୪୧*



# ହୋଲି ଖେଳ

ଶ୍ରୀ କୁଞ୍ଜ ବିହାରୀ ସାହୁ

ହୋଲି ଖେଳବେଳେ ଭୁଲି ଯା' ଭୁଲି ଯା'
ରାଗ-ରୁଷା-ଅଭିମାନ
ସାହିସାହି ବୁଲି ରଙ୍ଗ ବୋଳୁଥିଲେ
ପାଇବୁରେ ସନମାନ ।
ଅବିରର ରଙ୍ଗ ହେଉଥାଉ ପଛେ
ନେଳିଆ, ଗୋଲାପି, ନାଲି
ମଣିଷର ମନ ଗୋଟିଏ ରଙ୍ଗ ତ
ଖେଳୁଥିଲେ ମିଶି ହୋଲି ।

କିଏ ଧନୀ ଏଠି କିଏ ବା ଗରିବ,
କାହାର ବା କେଉଁ ଜାତି
ଦେହେ ଲାଗିଗଲେ ହୋଲି ରଙ୍ଗ ଥରେ
ଆପଣାର ହୁଏ ସାଥୀ ।
ଛୋଟ ପିଲାଠାରୁ ବୁଢ଼ା-ବୁଢ଼ୀ ଯାଏଁ,
ବୟସ ହୁଏନା ଜାଣି
ବେଶ-ପୋଷାକରେ ଭଲଲାଗେ ଦେଖି
ହସଖୁସି, ଠାଣି-ମାଣି ।
ରଙ୍ଗ ବୋଳାବୋଳି ଦେହ କୋଳାକୋଳି
ସତେ କି ସଉକ ଢଙ୍ଗ
ଦି'ପଦ କଥାରେ ପେଟ ପୂରିଯାଏ,
ଦେହେ ବୋଳିଦେଲେ ରଙ୍ଗ ।
ସାତ ରଙ୍ଗ ଠାରୁ ହୋଲି ଖେଳ ରଙ୍ଗ
ସବୁଠୁ ସୁନ୍ଦର ଦିଶେ
ସେହି ରଙ୍ଗ ପରା ମନ-ହୃଦୟରେ
ଆପେଆପେ ଯାଇ ମିଶେ ।
ବରଷ ପୂରିଲେ ହୋଲି ଖେଳ ପାଇଁ
ରଙ୍ଗର ପସରା ବସେ,
ଆନନ୍ଦ, ଉଲ୍ଲାସେ ସାଙ୍ଗ ବସିଯାଏ,
ଖିଲିଖିଲି ହୋଇ ହସେ ।

*ନୟାପଲ୍ଲୀ ବ୍ରିଟ୍ କଲୋନୀ, ଭୁବନେଶ୍ୱର-୭୫୧୦୧୨*



# ଭାଲୁ ସହ ଭେଟାଭେଟି

ଡକ୍ଟର ତ୍ରିନାଥ ପଟ୍ଟନାୟକ



ପୁଷମାସର ଜାଡ଼ଶୀତ ସମୟ । ସେଦିନ ଶନିବାର । ସକାଳୁଆ ପାଠପଢ଼ା ସାରି ଛୁଟି ହେଲା ସ୍କୁଲ । ଆମେ ଚାରିଜଣ ସାଙ୍ଗ ଘରକୁ ନ ଫେରି ଜଙ୍ଗଲ ବୁଲିବାକୁ ବାହାରିଲୁ । ପ୍ରଥମେ ବୁଦିବୁଦିକିଆ ଜଙ୍ଗଲ ପଡ଼ିବ, ତା'ପରେ ବଡ଼ ଜଙ୍ଗଲ । ଗହଳ ଗଛବୃକ୍ଷ । ସେଠି ବଡ଼ ବଡ଼ ଉଚ୍ଚା ଗଛ ସବୁ ଅଛି । ଆମେ ବା ସେଠିକୁ କାହିଁକି ଯିବୁ ? ଛୋଟ ଜଙ୍ଗଲରେ ତ ବହୁତ ବରକୋଳି, କଣ୍ଟେଇକୋଳି ଓ ଗୁଆକୋଳି ଗଛ ।

ସେଇ ସମୟରେ କଣ୍ଟେଇକୋଳି ଗଛରେ ପାଚିଲା କୋଳି ଭରପୂର ହୋଇ ଫଳିଥାଏ । ସାଙ୍ଗରେ କଞ୍ଚାଲଙ୍କା, ଲୁଣ ନେଇଥାଉ । କଣ୍ଟେଇକୋଳିକୁ ସେଥିରେ ମିଶାଇ ଛେଚିଲୁ । ସତରେ ସେ କୋଳିଛେଚା ଖାଇଲେ କି ମଜା ! ପାଟି ରାଗରେ ଜଳିଲା । ପାଖରେ ପାହାଡ଼ି ଝରଣା ବହିଯାଉଥାଏ । କାଚକେନ୍ଦୁ ଭଳି ପାଣି । ଆଞ୍ଜୁଳା ଆଞ୍ଜୁଳା ପାଣି ପିଇଲୁ ।

କେତେ ଜାତିର ରଙ୍ଗବେରଙ୍ଗ ଚଢ଼େଇ ଉଡ଼ି ବୁଲୁଥାନ୍ତି କୋଳି ଖାଇବା ନିମନ୍ତେ । ସେମାନଙ୍କର କିଚିରିମିଚିରି ଗୀତ ଆମକୁ ବହୁତ ଭଲଲାଗୁଥାଏ । ଏମିତି ସୁନ୍ଦର ପରିବେଶ ଆମେ ଆଗରୁ କେବେ ଦେଖି ନ ଥିଲୁ କି ଅନୁଭବ ସୁଦ୍ଧା କରି ନ ଥିଲୁ । ଆମ ଭିତରେ ଦୁଇଜଣ ସାଙ୍ଗଙ୍କର ବୟସ ଅଧିକ ଥିଲା । ଜଙ୍ଗଲକୁ ବହୁଥର ଆସିଛନ୍ତି । ବଡ଼ ସାହସୀ । ବଣରେ ଥିବା ହିଂସ୍ରଜନ୍ତୁଙ୍କୁ ସେ ଦୁହେଁ ଭୟ କରନ୍ତି ନାହିଁ । ସେ ଦୁହିଙ୍କର ନାମ ହେଲା ରୁଷିଆ ଓ ଶ୍ୟାମ ।

ରୁଷିଆ କହିଲା– ଚାଲ ଜଙ୍ଗଲର ଆଉ ଟିକିଏ ଭିତରକୁ ଯିବା । ସେଠି ବହୁତ କୋଳି ଗଛ ଅଛି । ସୁନ୍ଦର ଝରଣା ମଧ୍ୟ କୁଳୁକୁଳୁ ହୋଇ ବହି-ଯାଉଛି । ମୟୂର, ବଣକୁକୁଡ଼ା, ଠେକୁଆ, ହରିଣ ପାଣି ପିଉଥିବେ । ସେଇଠୁ ବରକୋଳି ଓ କଣ୍ଟେଇକୋଳି ତୋଳି ଫେରିବା । ଆମେ ଜଙ୍ଗଲ ଭିତରକୁ ଗଲୁ ।

ଗହଳିଆ କେଣ୍ଟେଇକୋଳି ବୁଦା । ବୁଦାତଳେ ଶ୍ୟାମ ତା ଅଣ୍ଟାରେ ବାନ୍ଧିଥିବା ଗାମୁଛାଟାକୁ ଖୋଲି ପାରିଦେଲା । ରୁଷିଆ ଖଣ୍ଡେ ବାଡ଼ି ଧରି ବୁଦା ଉପରକୁ ଆସ୍ତେ ଆସ୍ତେ ବାଡ଼େଇଲା । ଗୁଳୁଗୁଳୁ ଶବ୍ଦ କରି ବରକୋଳି ଗଛରୁ ଝଡ଼ି ଗାମୁଛା ଉପରେ ଗଦା ହୋଇଗଲା । ଠିକ୍ ଏତିକିବେଳେ ବୁଦା ଗହଳରୁ ଉହୁ ଉହୁ ଶବ୍ଦ ଶୁଣାଗଲା । ଯେମିତି ଜରୁଆ ଲୋକଟାଏ ଜରରେ ଥରିଥରି କମ୍ପୁଛି । ରୁଷିଆ ମୁଣ୍ଡ ଗଳେଇ ବୁଦା ତଳକୁ ଅତି ସତର୍କରେ ଚାହିଁଲା । ଆମକୁ ପାଟିରେ ଆଙ୍ଗୁଠି ଦେଇ ଚୁପ୍ ରହିବାକୁ ସୂଚନା ଦେଲା ।

ଆମେ ଦେଖିଲୁ କଳାରଙ୍ଗର ଏକ ବିରାଟ ଜନ୍ତୁ ଜରରେ କମ୍ପୁଛି । ଆମ ମନରେ ଭୟ ହୋଇଗଲା । ସେ ହାତଠାରି ଆମ ସମସ୍ତଙ୍କୁ କହିଲା– ଶୀଘ୍ର ଗଛ ଉପରକୁ ଚଢ଼ିଯାଅ । ସେ ଗଛ ଉପରକୁ ଉଠିଗଲା । ଆମେ ବି ତା ସାଥିରେ ଗଛ ଚଢ଼ିଲୁ ।

ଗଛ ଉପରେ ଥାଇ ମୁଁ ରୁଷିଆକୁ ପଚାରିଲି, "ସେଇଟା କି ଜନ୍ତୁ କିରେ ରୁଷିଆ ?"

–"ବିରାଟ ଶଙ୍କରପାଟିଆ ଭାଲୁ ।" ରୁଷିଆ ଆଖି

ବଡ଼ ବଡ଼ କରି କହିଲା, "ମୁଁ ସିନା ଦେଖିନେଲି, ନ ହେଲେ ସମସ୍ତଙ୍କୁ ତା ଧାରୁଆ ଜିଭରେ ଚାଟି ଦେଇଥା'ନ୍ତା । ଆଉ ନଖରେ ବିଦାରି ଦେଇଥା'ନ୍ତା ।"

ଶ୍ୟାମ ପଚାରିଲା, "ଆମେ ଏବେ କ'ଣ କରିବା ? କେମିତି ଏଇଠୁ ଘରକୁ ଯିବା ? ମୋ ଗାମୁଛାଟା ବୁଦା ତଳେ ରହିଗଲା । ଗାମୁଛାଟା ନ ନେଲେ ମୋ ମାଆ ପାଟି କରିବ ।"

ରୁଷିଆ କହିଲା– ବ୍ୟସ୍ତ ହୁଅନା । ମୁଁ ଜଙ୍ଗଲରେ କାଠ କାଟୁଥିବା ଲୋକଙ୍କୁ ଡାକୁଛି । ସେମାନେ ପହଞ୍ଚିଗଲେ ଭାଲୁ ଚାଲିଯିବ । ଆମେ ଗାମୁଛା ନେଇ ଘରକୁ ଫେରିଯିବା ।

ଆମ ସାଥିରେ ଆଉ ଜଣେ ସାଙ୍ଗ ଥିଲା । ତା' ନାଆଁ ଗଉ । ଗଉର ପାଟି ବଡ଼ । ରୁଷିଆ କହିଲା– ଗଉ ମୋ ସାଥିରେ ସ୍ୱର ମିଳାଇ ଶବ୍ଦ କର, ଯେମିତି ବହୁ-ଦୂରକୁ ସେ ଶବ୍ଦ ଯାଇପାରିବ ।

ରୁଷିଆ ମୁହଁରେ ଦୁଇ ହାତ ଦେଇ ଏକ ବିଚିତ୍ର ଶବ୍ଦ କଲା– "ଓ.......ହୋ.... ।"

ସେ ପଟରୁ ଉତ୍ତର ଆସିଲା, "ହୋ......... ହୋ....... । ଏମିତି କିଛି ସମୟ ଯାଏ ଶବ୍ଦର ଆଦାନପ୍ରଦାନ କରାଗଲା ।



ମୁଁ ପଚାରିବାରୁ ରୁଷିଆ କହିଲା– ଏ ହେଉଛି ଜଙ୍ଗଲୀ ଭାଷା । ମୁଁ ମୋ ବାପାଙ୍କଠାରୁ ଶିଖିଛି । ଜଙ୍ଗଲରେ କିଛି ସାହାଯ୍ୟ ଅନ୍ୟଠାରୁ ଚାହିଁବାକୁ ହେଲେ ଏମିତି ସାଙ୍କେତିକ ଭାଷା ବ୍ୟବହାର କରିବାକୁ ହୁଏ । କାଠକଟାଳିମାନେ ଆମ କଥା ଶୁଣିପାରିଲେ ବୋଧ । ପାଟିତୁଣ୍ଡ କରି ଏଠାକୁ ଆସୁଛନ୍ତି ।

ସେମାନେ କେମିତି ଜାଣିପାରିଲେ ଆମେ ଏଠି ଅଛୁ– ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

''ଜଙ୍ଗଲକୁ ଲୋକମାନେ କେତୋଟି ଡଗରରେ ବାଣ୍ଟିଛନ୍ତି । ମୁଁ ମୋ ଶବ୍ଦ ଭିତରେ ସୂଚାଇଦେଲି ସେ ଆମେ କଇଁଆ ଜଙ୍ଗଲରେ ଅଛୁ । ଏଠି ବହୁତ ତେନ୍ତୁଳି ଗଛ ଥିବାରୁ ଏହାର ନାଁ କଇଁଆ ଡଗର ।'' ରୁଷିଆ ବୁଝାଇଦେଲା ।

ସତକୁ ସତ ଆଠ ଦଶ ଜଣ ଲୋକ ପାଟିତୁଣ୍ଡ କରି କଥା ହୋଇ ହୋଇ ଆମେ ଚଢ଼ିଥିବା ଗଛ ତଳେ ପହଞ୍ଚିଗଲେ । ଭାଲୁକୁ ଦେଖିଲେ । ଆମକୁ କହିଲେ– ପିଲାଏ ଡରନାହିଁ । ଭାଲୁକୁ ଦିନରେ ଭଲ ଦେଖାଯାଏନି । ତାକୁ ମଧ୍ୟ ଜର ହୁଏ । ଏଣୁ ବିଶ୍ରାମ ନେଇଛି । ଏଇଟା ସେମାନଙ୍କର ଘର । ତା' ଘରେ ପଶି ତାକୁ ଡରାଇବା ଉଚିତ ନୁହେଁ । ରାତି ହେଲେ ସେ ସୁସ୍ଥ ହୋଇଯାଏ । ଖାଦ୍ୟ ଖୋଜିବା ପାଇଁ ବାହାରକୁ ଯାଏ । ଆଖୁ ତାର ପ୍ରିୟ ଖାଦ୍ୟ । ଆମେ ତମ ଗାମୁଛାକୁ ବୁଦାତଳୁ ଆଣି ଦେଉଛୁ । ଯାହା କଣ୍ଟେଇକୋଳି ତୋଳିଛ, ତାକୁ ଧରି ଗାଁକୁ ଫେରିଯାଅ । ଆମେ ଜଙ୍ଗଲରୁ ଫେରିଆସିଲୁ ।

ସବୁ ଜୀବଜନ୍ତୁଙ୍କର ସ୍ୱାଧୀନତା ଅଛି । କାହାରି ଶାନ୍ତିରେ ବ୍ୟାଘାତ ଦେବା ଉଚିତ ନୁହେଁ । ଯିଏ ଯାହା ପରିସର ମଧ୍ୟରେ ଖୁସିରେ ରହିବାର ଅଧିକାର ଅଛି । ନିଜେ ଖୁସିରେ ରୁହ ଓ ଅନ୍ୟକୁ ଖୁସିରେ ରହିବାକୁ ଦିଅ ।

*ଆଲୋକ ନଗର, ନିଆଳି, କଟକ- ୭୫୪୦୦୪*



## ବହିର ବାସ୍ନା

ଜୟଂତିକା

ବହିଟେ ଧରି ଦେଖିଲେ ଅବା
ପାଇଲେ ହାତ ପାଶେ,
ଦେହରୁ ତାର ନିଆରା ଏକ
ବାସନା ଭାସି ଆସେ ।
ଅକ୍ଷର ସବୁ ପାଲଟିଯାଏ
ଭଳିକି ଭଳି ମୁହଁ,
କିଏ ସେ ଲାଗେ ପୁରୁଣା ବନ୍ଧୁ
ଆଉ କେ ଚିହ୍ନା ନୁହଁ ।
ମୋଟୁଆ କିଏ ରଙ୍ଗିଲା କେହି
ପତଳା, ଡେଙ୍ଗା, ଗେଡ଼ା,
କିଏ ଗେରୁଆ କଳା ବା ନେଳି
କିଏ ସେ ବଙ୍କା ତେଡ଼ା ।
ହାତକୁ ହାତ ଧରି ଚାଲନ୍ତି
'ଶବଦ' କେତେ କହି
ଅଟକିଗଲେ କେବେ କେମିତି
ଚାହାଁନ୍ତି ହସିଦେଇ ।
କିଏ ସେ ଦିଶେ ହସକୁରିଆ
ବିରସ ଦିଶେ କିଏ,
କିଏ ବଖାଣେ କାହାଣୀ ଗୀତ
ସତେକି ସାଥୀଟିଏ ।
ଶବଦ ସୁଅ ବୁହାଇନିଏ
ଜୀବନ କଥା କହି,
ବହିଟେ ନୁହେଁ ନଈଟେ ଅବା
ଯାଉଛି ବହି ବହି ।
ସେଇଥିପାଇଁ ଚିହ୍ନା ବହିଟେ
ହାତରେ ଧରେ ଯେବେ
ଲାଗଇ ସତେ ଧରିଛି ଜାକି
ପୁରୁଣା ସାଥୀ ଏବେ ।

*ଜେ.କେ.ବି.କେ. କଲେଜ, କଟକ*

---



## କ୍ରୀଡ଼ା କୁଇଜ

ପୂଜାରାଣୀ ମଲ୍ଲିକ

୧) ଏସିଆନ ଗେମ୍ସରେ କୁସ୍ତି କେବେ ଅନ୍ତର୍ଭୁକ୍ତ ହେଲା ?

୨) ଅର୍ଜୁନ ପୁରସ୍କାର ଲାଭ କରିଥିବା ପ୍ରଥମ ମଲ୍ଲଯୋଦ୍ଧା କିଏ ?

୩) ଏସିଆରେ ଭାରତ ପାଇଁ ସ୍ୱର୍ଣ୍ଣପଦକ ଆଣି ଦେଇଥିବା ପ୍ରଥମ ମଲ୍ଲବୀର କିଏ ?

୪) ୧୯୬୦ରେ ଦ୍ରୋଣାଚାର୍ଯ୍ୟ ପୁରସ୍କାର ଲାଭ କରିଥିବା ଦୁଇଜଣ କୁସ୍ତି ପ୍ରଶିକ୍ଷକଙ୍କର ନାମ କ'ଣ ?

୫) କୁସ୍ତିରେ ପାରମ୍ପରିକ ଜାପାନୀ ଢାଞ୍ଚାକୁ କ'ଣ କୁହାଯାଏ ?

୬) କମନ୍ ୱେଲ୍‌ଥ ଗେମ୍ସରେ କୁସ୍ତି କେବେ ଅନ୍ତର୍ଭୁକ୍ତ ହେଲା ?

୭) ଏକ କୁସ୍ତିକୁ କେତେଜଣ ଅଫିସିଆଲ ପରିଚାଳନା କରିଥାନ୍ତି ?

*+୩ ବିଜ୍ଞାନ ସମ୍ମାନ, ଡିମିରି, ନୋଦା, କଟକ*

*(ଉତ୍ତର ୧୭ ପୃଷ୍ଠାରେ)*

# ନିଃଶବ୍ଦ ପରିବେଶବିତ୍

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

ଆମ ଗାଁ'ଗହଳର ପିଲାମାନେ ଖତଗଦା ସହ ବେଶୀ ପରିଚିତ । କହିବାକୁ ଗଲେ, ଅଳିଆ ଆବର୍ଜନାକୁ ଦେଖିଦେଖି ଆମର ଦେହସୁହା ହୋଇଗଲାଣି । ଆମେ ଧରିନେଇଛୁ ଯେ ଆମେ ଯେଉଁଠି ଇଚ୍ଛା ସେଇଠି ସେଗୁଡ଼ିକ ଫିଙ୍ଗି ଦେଇପାରିବୁ ଏବଂ ତାକୁ ସଫା କରିବା କାମ ସରକାର ତୁଲେଇବେ । ଏପରିକି ଦୁଇଚାରି ଖୋଜ ଯାଇ ଅଳିଆ ଡ୍ରମ୍ ଭିତରେ ଅଳିଆ ଜିନିଷ ପକେଇବା ଭଳି ସାମାନ୍ୟ କାମଟିକୁ ଆମେ କରିବା ପାଇଁ ବି ନାରାଜ ହଉ । ଛାଡ଼ନ୍ତୁ ଏ କଥା ।

ଆଚ୍ଛା ପିଲାମାନେ କହିଲ ଦେଖି, କଅଣ କଅଣ ଜିନିଷ ସବୁ ପଡ଼ିଥାଏ ଅଳିଆ ଗଦାରେ ? ଅଳିଆ ଗଦାଗୁଡ଼ିକରେ ପଡ଼ିଥାଏ ଏଣୁତେଣୁ ଜିନିଷ । କାଗଜ, କାଗଜ ପଟା, କାଠିକୁଟା, କାଠଖଣ୍ଡ, ଟିଣଡବା, ଭଙ୍ଗାବୋତଲ, ଭଙ୍ଗା-ଖେଳନା, ଭଙ୍ଗା କପ୍‌ପ୍ଲେଟ୍ ଓ ବାସନକୁସନ, କେତେ ନା କେତେ ପ୍ରକାର ଭଙ୍ଗା ପ୍ଲାଷ୍ଟିକ୍ ଜିନିଷ ଓ ଛୋଟବଡ଼ ପ୍ଲାଷ୍ଟିକ୍ ଜରି ଓ ପ୍ଲାଷ୍ଟିକ୍ ଖୋଳ, ଛିଣ୍ଡା କନା– ଏମିତି କେତେ କଅଣ ।

ଅଳିଆ ଗଦାରୁ ଅଳିଆ ଗଦାକୁ ବୁଲି ସେଇ ସବୁ ଜିନିଷ ଗୋଟାଉଥିବା ଛୋଟପିଲା ଓ ବଡ଼ମଣିଷ ତୁମମାନଙ୍କ ଆଖିରେ ପଡ଼ିନି ? କିଏ କେବଳ ପ୍ଲାଷ୍ଟିକ୍ ଜିନିଷ ଗୋଟାଉଥାଏ ତ ଆଉ କିଏ ଗୋଟାଉଥାଏ କେବଳ ଭଙ୍ଗା, ଚେପା ଲୁହା ଜିନିଷ । ଆଉ କିଏ ଗୋଟାଇଥାଏ କେବଳ କାଚସାମଗ୍ରୀ । ସେମାନେ ହେଉଛନ୍ତି ଅତି ଗରିବ । ପ୍ରାୟତଃ ସମସ୍ତଙ୍କ ଦେହ ଫୁଙ୍ଗୁଳା । ଲାଜ ଘୋଡ଼ାଇବା ପାଇଁ ଯାହା ଅବା ପିନ୍ଧିଥାନ୍ତି, ତାହା ଚିରାଫଟା ଓ ସାତସିଆଁ । ସେମାନେ ଯେ ଦୁଇଓଳି ପେଟପୂରା ଖାଇବାକୁ ପାଉନାହାନ୍ତି, ସେମାନଙ୍କୁ ଚାହିଁଦେଲେ ଏହା ଜଣାପଡ଼ିଯାଏ ।

ଏମିତିକା ଗୋଟିଏ ଦୃଶ୍ୟ ଥରେ ଧରାପଡ଼ିଗଲା ସ୍ୱରାଟ ଘୋଷଙ୍କ ଆଖିରେ ('ସ୍ୱରାଟ' ଶବ୍ଦର ଅର୍ଥ ଈଶ୍ୱର, ମହାନ୍ ପୁରୁଷ) । ତାଙ୍କ ଘର ପାଖ ଅଳିଆଗଦାରୁ ଅଳିଆ ଗୋଟେଇ ଚାଲିଥିଲେ ମାଆ-ଝିଅ ଦୁଇଜଣ । ଏହି ଦୁହିଁଙ୍କୁ ଦେଖି ହଠାତ୍ ତାଙ୍କ ମନରେ ଜାଗି ଉଠିଲା ଖୁବ୍ କୌତୂହଳ । ଏମାନେ କେଉଁଠି ରହନ୍ତି, କଅଣ ଖାଆନ୍ତି, କେମିତି ଚଳନ୍ତି, ଏମାନଙ୍କ ଘରେ ଆଉ କିଏ କିଏ ଅଛନ୍ତି–ଏହି ସବୁ କଥା ଜାଣିବା ନିମନ୍ତେ ସେ ଅତି ଆଗ୍ରହୀ ହୋଇଉଠିଲେ ।



କେବଳ ତ ଏଇ ମାଆ-ଝିଅ ନୁହନ୍ତି, ଅଳିଆ ଗୋଟାଉଥିବା ଲୋକଙ୍କ ଚାଲିଚଳଣ ଓ ଜୀବନଯାପନ ପ୍ରଣାଳୀ ବିଷୟରେ ଖବର ସଂଗ୍ରହ କରିବା ପାଇଁ ସେ ଖୋଜି ଖୋଜି ସେମାନଙ୍କ ଘରେ ପହଞ୍ଚିଲେ । କେବଳ

ଥରେଅଧେ ନୁହେଁ, ଗଲେ ବାରମ୍ବାର । ସେମାନଙ୍କ ଘରେ ପହଞ୍ଚି ସେମାନଙ୍କ ଭଲମନ୍ଦ ପଚାରିବା ସଙ୍ଗେ ସଙ୍ଗେ ଉଠାଇନେଲେ ସେମାନଙ୍କ ଫଟୋ ମଧ୍ୟ । ତାଙ୍କର ଜଣେ ବନ୍ଧୁ ମଧ୍ୟ ତାଙ୍କୁ ନେଇଗଲା ଗୋଟିଏ ବସ୍ତିକୁ । ସେହି ବସ୍ତିକୁ ଯାଇ ବି ସେ ଅନେକ ଫଟୋ ଉଠେଇନେଲେ ।



ସେଇ ସବୁ ଫଟୋକୁ ସ୍ୱରାଟ କଲେ କଅଣ ? ସେହି ସବୁ ଫଟୋକୁ ବାଛି ଓ ବଛା ବଛା ଫଟୋଗୁଡ଼ିକୁ ଏକାଠି କରି ସେ ପଠେଇଦେଲେ ଏକ ଫଟୋ ପ୍ରତିଯୋଗିତାକୁ । ସେ ପଠେଇଥିବା ଫଟୋଗୁଡ଼ିକରୁ ୧୫ଟି ଫଟୋ ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହେଲା ଓ ତାଙ୍କୁ ପ୍ରଦାନ କରାଗଲା 'ନୀଲ୍ ଡୋଙ୍ଗ୍ରେ' ପୁରସ୍କାର ।

ସେ ଯେଉଁ ଫଟୋଗୁଡ଼ିକ ପଠେଇଥିଲେ, ତାର କି ନାମକରଣ କରିଥିଲେ, ଶୁଣିବ ? ତା'ର ନାଆଁ ରଖିଥିଲେ 'ନିଃଶବ୍ଦ ପରିବେଶବିତ୍' । ଏହାର ଅର୍ଥ, ଯେଉଁମାନେ କୌଣସି ତୁମ୍ବିତୋଫାନ୍ ନ କରି, ଭାଷଣବାଜି ନ କରି ଅତି ନୀରବରେ ପରିବେଶକୁ ସୁରକ୍ଷିତ ରଖିଥାନ୍ତି ।

ହେଲେ ସେ ଏପରି ନାଆଁଟିଏ ବାଛିଲେ କାହିଁକି ? ଏହାର କାରଣ ବୁଝାଇବା ପାଇଁ ସ୍ୱରାଟ କହିଥିଲେ, "ଜନସାଧାରଣ ଧରିନେଇଛନ୍ତି ଯେ ଅଳିଆବର୍ଜନାର ସୁପରିଚାଳନା କରିବା ହେଉଛି ମ୍ୟୁନିସିପାଲିଟି ଓ ଏନ୍.ଏ୍.ସିର କାମ । କିନ୍ତୁ ପ୍ରକୃତରେ ଦେଖିଲେ ଅଳିଆବର୍ଜନାର ସୁପରିଚାଳନାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି ଅଳିଆଗଦାଗୁଡ଼ିକରୁ ଏଣୁତେଣୁ ଜିନିଷ ଗୋଟାଉଥିବା ପିଲା ଓ ଅନ୍ୟମାନେ । ଏହିମାନଙ୍କ ଦ୍ୱାରା ହିଁ ବେଶୀ ଅଳିଆ-ଆବର୍ଜନା ସଫା ହୋଇଥାଏ । ଏମାନେ ଜିନିଷ ଗୋଟାଉଥିବାବେଳେ ପାଟିତୁଣ୍ଡ କରି ନ ଥା'ନ୍ତି । ଜିନିଷମାନ ଗୋଟାଇ ଚାଲିଥାନ୍ତି ଚୁପ୍‌ଚାପ୍ ।"

ସେ ଆହୁରି କହିଥିଲେ, "କେବଳ ହାଇଦ୍ରାବାଦରେ ହିଁ ରହିଛନ୍ତି ପାଖାପାଖି ତିନିଲକ୍ଷ ଅଳିଆଗୋଟାଳି । ସେମାନେ କେହି ପରିବେଶ ଶବ୍ଦଟିକୁ ଶୁଣିନାହାନ୍ତି । ପରିବେଶ କହିଲେ ତା'ର ଅର୍ଥ ମଧ୍ୟ ସେମାନେ ବୁଝିପାରିବେନି । ସେମାନଙ୍କ କାର୍ଯ୍ୟଦ୍ୱାରା ଯେ ପରିବେଶ ସୁରକ୍ଷିତ ରହିପାରୁଛି, ଏହା କହିଲେ ତାଙ୍କ ମୁଣ୍ଡରେ କିଛି ପଶିବନି । କିନ୍ତୁ ସେହିମାନେ ହିଁ କରି ଚାଲିଛନ୍ତି ସମାଜର ସର୍ବାଧିକ ଅପରିଷ୍କୃତ; କିନ୍ତୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ପରିବେଶକୁ ପରିଷ୍କାର ପରିଚ୍ଛନ୍ନ ରଖିବା କାର୍ଯ୍ୟ ।"

ତେବେ ଫଟୋ ଉଠେଇବା ନିମନ୍ତେ ସ୍ୱରାଟଙ୍କ ଠାରେ କେବେ ଜାତ ହୋଇପଡ଼ିଲା ସଉକ ? ତାଙ୍କ ସଉକଟା ଆଦୌ ବେଶୀ ଦିନର ନୁହେଁ । ୨୦୧୨ ମସିହାରେ, ବା ଜମା ୪ ବର୍ଷ ତଳେ ତାଙ୍କ ସ୍ତ୍ରୀ ତାଙ୍କୁ ଉପହାର ଦେଇଥିଲେ କ୍ୟାମେରାଟିଏ । ଫଟୋ ଉଠେଇବା ବିଷୟରେ ସେ କୌଣସି ସ୍କୁଲ, କଲେଜରେ ପଢ଼ିନାହାନ୍ତି କି ଏ ବିଷୟରେ ତାଙ୍କର କୌଣସି ଡିଗ୍ରୀ



ଶ୍ରୀ ସୁରେଶ କୁମାର ପଣ୍ଡା

## ଦେଶର ରକ୍ଷକ :

ଥରେ ସ୍ୱାମୀ ରାମତୀର୍ଥ ଜାପାନ ଗସ୍ତରେ ଯାଇଥିଲେ । ସେଠାରେ ତାଙ୍କର ବହୁତ ସତ୍କାର କରାଗଲା । ସେଠାରେ ଏକ ବିଦ୍ୟାଳୟକୁ ତାଙ୍କୁ ନିମନ୍ତ୍ରଣ କରାଗଲା । ସ୍କୁଲରେ ପହଞ୍ଚି ମନରେ କ'ଣ ଚିନ୍ତା କଲେ କେଜାଣି, ଜଣେ ଛାତ୍ରକୁ ପଚାରିଲେ–

"ତୁମର ଧର୍ମ କ'ଣ ?"

"ବୌଦ୍ଧ ଧର୍ମ ।" ଛାତ୍ରଜଣଙ୍କ ଉତ୍ତରଦେଲା ।

"ମହାତ୍ମା ବୁଦ୍ଧଙ୍କ ବିଷୟରେ ତୁମେ କ'ଣ ଜାଣିଛ ?"

"ବୁଦ୍ଧ ତ ସାକ୍ଷାତ ଭଗବାନ !" ଏହା କହି ଛାତ୍ରଜଣଙ୍କ ନିଜ ଦେଶର ପ୍ରଥା ଅନୁସାରେ ବୁଦ୍ଧଙ୍କର ଧ୍ୟାନ କରି ତାଙ୍କୁ ପ୍ରଣାମ କଲା ।

ଏଥର ସ୍ୱାମିଜୀ ଆଉ ଜଣେ ଛାତ୍ରଙ୍କୁ ପଚାରିଲେ, "କନ୍‌ଫୁସିୟସଙ୍କ ବିଷୟରେ ତୁମେ କ'ଣ କହିବ ?"

ସେଇ ଛାତ୍ରଜଣଙ୍କ ମଧ୍ୟ ଅତ୍ୟନ୍ତ ଶ୍ରଦ୍ଧା ସହକାରେ ପୂର୍ବଛାତ୍ର ଭଳି ନିଜ ଦେଶର ପ୍ରଥା ଅନୁସାରେ ଧ୍ୟାନ ଓ



ପ୍ରଣାମ କରି କହିଲା, "କନ୍‌ଫୁସିୟସ୍ ଜଣେ ମହାନ୍ ସନ୍ଥ ।"

ଅଳ୍ପ ହସି ସିଏ ପୁଣି କହିଲେ, "ଏଥର ମୋର ଆଉ ଗୋଟିଏ ପ୍ରଶ୍ନର ଉତ୍ତର ଦିଅ । ଧର କୌଣସି ଏକ ଦେଶ ତୁମ ଦେଶ ଉପରେ ଆକ୍ରମଣ କଲା ଆଉ ତାର ନେତୃତ୍ୱ ନେବେ ବୁଦ୍ଧ ଆଉ କନ୍‌ଫୁସିୟସ୍ । ସେ କ୍ଷେତ୍ରରେ ତୁମେ କ'ଣ କରିବ ?"

ଛାତ୍ରମାନେ କ୍ରୋଧିତ ହୋଇଉଠି କହିଲେ, "ଆମେ ସେ ଦୁହିଙ୍କର ମୁଣ୍ଡ କାଟିଦେବୁ ।"

ସ୍ୱାମୀ ରାମତୀର୍ଥ ଏହା ଶୁଣି ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ– "ଶାନ୍ତ ହୁଅ ବାବୁ । ଯେଉଁ ଦେଶରେ ତୁମମାନଙ୍କ ଭଳି ବାଳକ ରହିଛନ୍ତି, ତା'କୁ କିଏ ଆଖି ଉଠେଇ ଚାହିଁବାକୁ ସାହସ ମଧ୍ୟ କରିପାରିବ ନାହିଁ ।''

## କରିପାରନ୍ତେ କିନ୍ତୁ କଲେନାହିଁ :



ଗୋଣ୍ଡକ ରାଜା ତଥା ପ୍ରଖ୍ୟାତ ହିନ୍ଦୀ ସାହିତ୍ୟିକ ଶ୍ରୀ ଭଗବତ ସିଂହ ଗାଡ଼ିରେ ବସି କୁଆଡ଼େ ଯାଉଥାଆନ୍ତି । କାର ଗୋଟିଏ ଗ୍ରାମରେ ପ୍ରବେଶ କଲା । ଏ ସମୟରେ ଦେଖିଲେ ବୁଢ଼ୀଟିଏ ଠିଆହୋଇଛି । ପାଖରେ ତା'ର ଗୋଟିଏ ବଡ଼ ଗୋବର ଟୋକେଇ । ରାସ୍ତାରେ ଯିବାଆସିବା ଲୋକଙ୍କୁ ସିଏ ନେହୁରା ହୋଇ କହୁଥାଏ, "ଏଇ ବୁଢ଼ୀମଣିଷଟାକୁ ଦୟାକର । ମୋତେ ଟୋକେଇ ମୁଣ୍ଡରେ ରଖିବାରେ ସାହାଯ୍ୟ କର । ଟୋକେଇ ଉଠେଇବାକୁ ମୋର ବଳ ପାଉନି ।" କିନ୍ତୁ କେହି ହେଲେ ତା'କଥା ଶୁଣି ପାଖକୁ ଆସୁ ନ ଥିଲେ ।

ରାଜା ଡ୍ରାଇଭରକୁ ଗାଡ଼ି ଅଟକେଇବାକୁ ଆଦେଶ ଦେଲେ । ତା'ପରେ ଟୋକେଇଟି ଉଠେଇ ବୁଢ଼ୀ ମୁଣ୍ଡରେ ରଖିଦେଲେ । ବୁଢ଼ୀ ତାଙ୍କୁ କଲ୍ୟାଣ କରି ଚାଲିଗଲା ।

ସଂଯୋଗବଶତଃ ଗାଁ'ର ମୁଖିଆ ସେଇ ରାସ୍ତା

ଦେଇ ଯାଉଥିଲେ । ସିଏ ତାକୁ ଚିହ୍ନିଥାଆନ୍ତି । ସେଥିପାଇଁ ପାଖକୁ ଆସି ହାତଯୋଡ଼ି କହିଲେ, "ମହାରାଜ ! ଏଇ ତୁଚ୍ଛ କାମ ଆପଣ କଲେ । ଏଇ କାମ ତ କୌଣସି ସାଧାରଣ ଗ୍ରାମବାସୀ କରି ପାରିଥାଆନ୍ତେ ।"

''କରିପାରି ଥାଆନ୍ତେ, କିନ୍ତୁ କଲେନାହିଁ । ଆଉ ମୁଁ ସେ କାମଟା କରିଦେଲି । ସେଥିରେ ବା କ୍ଷତି କ'ଣ ?" ସ୍ମିତହାସ୍ୟ କରି କହିଲେ ମହାରାଜା ଭଗବତ୍ ସିଂହ ।

## ତିନୋଟିର ଅନୁକରଣ କର :

ଥରେ ସାଲେହ ଆମେରୀ ନାମକ ଜଣେ ଫକୀର 'ସନ୍ଥ ରବିୟା'ଙ୍କୁ ପ୍ରଶ୍ନ କଲେ, "ଆପଣ ସାଧନାରେ ଏତେ ଉଚ୍ଚ ସୋପାନରେ ପହଞ୍ଚିପାରିଲେ କିପରି ?"

ରବିୟା କିଛି ନ କହି କୁଟୀର ଭିତରକୁ ଯାଇ ଗୋଟିଏ ମହମବତୀ, ଛୁଞ୍ଚି ଆଉ କେରାଏ ଅଲରା କେଶ ଆଣି ତାଙ୍କ ଆଗରେ ରଖିଲେ । ତା'ପରେ କହିଲେ, "ଏଇ ତିନୋଟି ଜିନିଷ ହେଉଛି ମୋର ସାଧନାର ରହସ୍ୟ ।"

ସାଲେହ ଆମରୀ କିଛି ନ କହି ଆଶ୍ଚର୍ଯ୍ୟରେ କେବଳ ତାଙ୍କ ଆଡ଼କୁ ଚାହିଁ ରହିଲେ । ତାହା ଦେଖି ରବିୟା ବୁଝେଇଲେ– ମହମବତୀ ନିଜେ ଜଳି ଅନ୍ୟକୁ ଆଲୋକ ପ୍ରଦାନ କରେ । ଛୁଞ୍ଚିର ବିଶେଷତ୍ୱ ହେଉଛି ନିଜେ ପଛକେ ଲଙ୍ଗଳା ରୁହେ; କିନ୍ତୁ କପଡ଼ା ସିଲେଇରେ ସାହାଯ୍ୟ କରି ଅନ୍ୟର ଲଜ୍ୟା ନିବାରଣ କରେ । ଆଉ ଏଇ କେଶରାଶି, ଏହାର ଅର୍ଥ ହେଉଛି ସବୁବେଳେ କୋମଳ ରହିବ । କୌଣସି ପରିସ୍ଥିତିରେ ମଧ୍ୟ କେବେ କଠୋର ହେବନାହିଁ । ତୁମେ ଏଇ ତିନୋଟି ଜିନିଷର ଅନୁକରଣ କରି ଈଶ୍ୱରଙ୍କର ସେବାରେ ମଗ୍ନ ରୁହ । ମୁଁ ଯେଉଁ ସ୍ଥିତିରେ ପହଞ୍ଚିଛି, ସେଇ ସ୍ଥିତିରେ ପହଞ୍ଚିବାକୁ ତୁମକୁ ବିଶେଷ ବିଳମ୍ବ ହେବନାହିଁ ।

*ଗୁମୁଡ଼ା, ଭୈରବସିଂହପୁର, କୋରାପୁଟ-୭୬୪୦୫୭*

## ଆସ ହସିବା

ଶ୍ରୀମତୀ ରାଜଲକ୍ଷ୍ମୀ ତ୍ରିପାଠୀ

ଗୋଲ ମୁହଁ ଚେପେଟା ମୁହଁ ଯେତେ ଲମ୍ବା ମୁହଁ
ସୁନ୍ଦର କେବେ ଦିଶେ କି ତାହା ହସ ନଥିଲେ କୁହ ?
ତୁମକୁ ଯଦି କିଏ ସେ ଜଣେ ଚାହିଁକି ଦିଏ ହସି
ଫେରାଇଦେଲେ ସରଳ ହସ ହେବ ତା' ମନ ଖୁସି ।
ହସଟି ପିଲେ ଜାଣିଥା ତୁମେ ସଭିଙ୍କୁ କରେ ବଶ
ଯେତେକ ଗୁଣ ପାଖରେ ଅଛି ସବୁଠୁ ବଡ଼ ହସ ।
ଜଗତଟାକୁ ହାତେଇବାକୁ ତାକୁ ନ ପଡ଼େ କଷ୍ଟ
ହସିହସିକା କରିବ କାମ ପଢ଼ିବ ସବୁ ପାଠ ।
ହସଟି ବାବା ଯୋଗାଇଦିଏ ସବୁ ପ୍ରକାର ସାର
ବିଜ୍ଞାନ କହେ– ସବୁଠୁ ଏହା ଅସଲ ଉପଚାର ।
ଚିହ୍ନା ହେଉ ବା ହେଉ ଅଚିହ୍ନା ହସିଲେ ହସେ ଧରା
କୁନି ପିଲାଟି ଚାହିଁ ବସଇ ଦରୋଟି ହସି ପରା ।
ହସିହସିକା ଆଗେଇଯିବ ବିତରିଯିବ ଗୁଣ
ତୁମେ ହସିଲେ ଦେଶ ହସିବ ଏଇ କଥାଟି ଜାଣ ।

*ମାର୍ଫତ୍- ଇଂ ପଦ୍ମନାଭ ମିଶ୍ର, କ୍ୱା.ନଂ- ଇ-୯, ଏସ୍.ଆଇ.ପି କଲୋନୀ, ପୁରୀ-୭୫୭୦୦୧*

# ମହାନତାର ବିଚାର

ଶ୍ରୀ ନିମାଇଁ ଚରଣ ଦାସ

"ହେଲିନି ବଡ଼ମଣିଷ, ଧନୀ, ମାନୀ,
ଗଉରବ ବହି"
ନିଜକୁ ଭାବନ୍ତି ହୀନ କେହି କେହି
ଏହିପରି କହି ॥

"ଜୀବନଟା ବୃଥା ହେଲା କାହିଁପାଇଁ
ହେଲି ମୁଁ ନିକୃଷ୍ଟ"
ଏସନ ଅନେକ ଭାବି ଅଯଥାରେ
ପାଇଥାନ୍ତି କଷ୍ଟ ॥

ଏଇ ତ ଭ୍ରମଧାରଣା; ଭଲେ ଆସ
କରିବା ବିଚାର
ଏଥେ କିଛି ଉପଦେଶ ସେ ପ୍ରମାଦ
କରିବାକୁ ଦୂର ॥

ନିତି ଆସେ ଯେତେ କାମ ଯେହୁ ତାରେ
ସେହିଦିନ ସାରେ
ମନେ ମନେ ଭାବି ନେଇ "ସବୁ ମତେ
ଦିଅନ୍ତି ଠାକୁରେ ।।"

ଆଗରେ ହାବୁଡ଼େ ଝଡ଼, ବାଧାବିଘ୍ନ
କଠୋର ପରୀକ୍ଷା
ବିଶ୍ୱାସ ସେ ରଖୁଥିବ "ଏ ତ ଏକା
ଈଶ୍ୱରଙ୍କ ଇଚ୍ଛା ।"

ଅକିଞ୍ଚନ, କର୍ମପାଳି ପଡ଼ିଥାଉ
ଯହିଁ ଅବା ତହିଁ
ଭାବୁଥିବ; "ଭଗବାନ ତା ଆଡ଼କୁ
ରହିଛନ୍ତି ଚାହିଁ ।"

ହାତକୁ ଆସନ୍ତେ କର୍ମପେଶା କରେ
ଢାଳି ମନପ୍ରାଣ
ସେ କର୍ମକୁ ସବୁଠାରୁ ବଡ଼ ବୋଲି
ଭଲ ଭାବେ ଜାଣ ॥

ଯେହୁ ଋଣ ଶୁଝିବାକୁ ଇଚ୍ଛା କରେ
ମଣିଷ ଜନ୍ମର
ଆପଣା କର୍ତ୍ତବ୍ୟ ପାଳି ବିନିଯୋଗେ
ଶକତି ନିଜର ॥

କେଉଁଠି ହୋଇଛ ଠିଆ ସେ ତ ନୁହେଁ
ଘଟଣା ବିରାଟ
ଯେଉଁଆଡ଼େ ଗତି ତୁମ ସେଇ ଲକ୍ଷ୍ୟ
ବାସ୍ତବରେ ଶ୍ରେଷ୍ଠ ॥

ସାନ ସାନ କର୍ମେ ସାଧ ହେଉ ତାହା
ଯେତେ ଯେତେ ସାନ
ସେଇପରି କାମ କରି ଶେଷେ କେତେ
ହୁଅନ୍ତି ମହାନ ॥

*ପ୍ଲଟ୍ ନଂ ୧୭୮୮/୨୯୫୨, ସରସ୍ୱତୀ ସଦନ, ଟେଲିକମ୍ କଲୋନି, ଶିଶୁପାଳଗଡ଼, ଭୁବନେଶ୍ୱର- ୭୫୧୦୦୨*

---

**କ୍ରୀଡ଼ା କୁଇଜ୍‌ର ଉତ୍ତର--** ୧)୧୯୫୪ ମସିହାରେ, ୨) ଉଦୟଚାନ୍ଦ, ୧୯୬୧, ୩) – ମାରୁତି ମାଛେ, ୧୯୬୨, ୪) – ବି.ବି ଭାଗବତ ଏବଂ ଗୁରୁ ହନୁମାନ, ୫) – ସୁମୋ କୁସ୍ତି, ୬) – ୧୯୩୦ ମସିହାରେ, ୭) – ୪ଜଣ

# ଯୋଗ୍ୟ ପିତାର ଯୋଗ୍ୟ ପୁତ୍ର

ଶ୍ରୀ ନଟବର ସାହୁ

ଆମ ଦେଶରେ ଜଣେ ବିଖ୍ୟାତ ବାରିଷ୍ଟର ଥିଲେ । ତାଙ୍କର ଧନର ଅଭାବ ନ ଥିଲା । ତାଙ୍କ ପୁଅକୁ ତାଙ୍କ ପରି ବାରିଷ୍ଟର କରିବା ପାଇଁ ଇଂଲଣ୍ଡରେ ବାରିଷ୍ଟର ପଢ଼ିବା ପାଇଁ ପଠାଇଲେ । ତାଙ୍କ ପୁଅର ହାଇସ୍କୁଲର ପାଠପଢ଼ା ଲଣ୍ଡନର ହାରୋ ହାଇସ୍କୁଲରେ କରାଇଥିଲେ । ଇଂଲଣ୍ଡ ତାଙ୍କ ପାଇଁ ନୂଆ ନୁହେଁ । ତାଙ୍କର ସେଇ ପୁଅଟି ଥିଲା ତାଙ୍କର ଏକମାତ୍ର ଅଧିକାରୀ । ତେଣୁ ସେ ଆଶା କରିଥିଲେ ଯେ ତାଙ୍କ ପୁଅ ନିଶ୍ଚୟ ବାରିଷ୍ଟର ହୋଇ ଭାରତ ଫେରିବ । ପୁତ୍ରକୁ ଇଂଲଣ୍ଡ ପଠାଇବାବେଳେ ପିତା ବୁଝାଇ କହିଥିଲେ, "ତୋର ଏବେ ଯୁବା ବୟସ । ଏହି ବୟସରେ ଯୁବକମାନେ ବିପଥଗାମୀ ହେବାର ଯଥେଷ୍ଟ ଆଶା ଥାଏ । ସେଥିପାଇଁ ତୋ ପାଖକୁ ଯାହା ଟଙ୍କାପଇସା ପଠାଇବି, ତାକୁ ଉଚିତ ବାଟରେ ଖର୍ଚ୍ଚ କରିବୁ । କୁସଙ୍ଗରେ ପଡ଼ିବୁ ନାହିଁ ।" ପୁଅକୁ ସତ୍ ଉପଦେଶ ଦେଇ ଇଂଲଣ୍ଡ ପଠାଇଦେଲେ ।

ଯୁବକଟି ଲଣ୍ଡନରେ ପାଠପଢ଼ାରେ ବ୍ୟସ୍ତ ଥିଲେ । ଉଭୟ ପିତାମାତା ପ୍ରତିମାସରେ ପୁଅ ପାଖକୁ ଚିଠି ଲେଖି ଭଲମନ୍ଦ ଜଣାଇବା ପାଇଁ ଉପଦେଶ ଦେଇଥାନ୍ତି । କିଛିଦିନ ପରେ ଯୁବକଟି ନିଜ ପିତାଙ୍କ ନିକଟରୁ ଗୋଟିଏ ଚିଠି ପାଇଲେ । ଘରର ଭଲମନ୍ଦ ଖବର, ମା'ଙ୍କ ଖବର ଖୋଜି ଜାଣିବା ପାଇଁ ଆଗ୍ରହର ସହ ଚିଠି ଖୋଲି ପଢ଼ିଲେ । ତେବେ ପିତାଙ୍କଠାରୁ ଏକ ବିଚିତ୍ର ସତର୍କ ଉପଦେଶ କଥା ପଢ଼ି ଯୁବକଙ୍କ ମୁହଁ ମଳିନ ପଡ଼ିଗଲା । ତାଙ୍କ ପିତା ଲେଖିଥିଲେ, "ମୋର କଷ୍ଟୋପାର୍ଜିତ ଧନରୁ କିଛି ତୁମ ପାଠପଢ଼ା ପାଇଁ ତୁମ ପାଖକୁ ପଠାଉଛି । ତୁମେ ମୋ ଟଙ୍କା ପାଇ କେଉଁ କେଉଁ ବାବଦରେ କେତେ କେତେ ଖର୍ଚ୍ଚ କରୁଛ, ତାର ସମ୍ପୂର୍ଣ୍ଣ ହିସାବ ମୋତେ ଲେଖି ଫେରନ୍ତା ଡାକରେ ଜଣାଇବ । ଯେହେତୁ ମୁଁ ଟଙ୍କା ପଠାଉଛି, ତେଣୁ ତାର ଖର୍ଚ୍ଚ ଉଚିତ୍ ମାର୍ଗରେ କରିଛ କି ବଦ୍‌ଖର୍ଚ୍ଚ କରିଛ, ମୋର ଜାଣିବାର ଅଧିକାର ଅଛି । ଶୀଘ୍ର ଲେଖି ଜଣାଇବ ।"

ଯୁବକଟି ଚିଠିଟି ଆମୂଳଚୂଳ ପଢ଼ି ଟିକେ ଗମ୍ଭୀର ହୋଇଗଲେ– ପିତାଙ୍କ ଆଶଙ୍କା ମୁଁ ତାଙ୍କ ଟଙ୍କା ବଦ୍‌ଖର୍ଚ୍ଚ କରୁଛି । କୁସଙ୍ଗରେ ପଡ଼ି ବାଜେ ଖର୍ଚ୍ଚ କରି ପକାଉଥିବି । ପିତାଙ୍କର ତାଙ୍କ ଉପରେ ନିଶ୍ଚୟ ବିଶ୍ୱାସରେ ଉଣା ରହିଛି । ସେ ଭାବିଲେ– ମୁଁ ତ ପିତାଙ୍କ ଉପଦେଶ ଅନୁସାରେ ଟଙ୍କା ଖର୍ଚ୍ଚ କରୁଛି । ତାଙ୍କ ପ୍ରେରିତ ଅର୍ଥ ମୁଁ ଅପବ୍ୟୟ କରୁଥାଇପାରେ ବୋଲି ତାଙ୍କର ଧାରଣା ହୋଇଛି । ତେଣୁ ସେ ଖର୍ଚ୍ଚର ହିସାବ ମାଗିଛନ୍ତି ।

ଯୁବକ ଥିଲେ ସ୍ୱାଭିମାନୀ । ତେଣୁ ସେ ସିଦ୍ଧାନ୍ତ କଲେ ଯେ ବାପାଙ୍କୁ ଏ ବିଷୟରେ ନିଶ୍ଚୟ ଲେଖି ଜଣାଇବେ । ସେଥିପାଇଁ ସେ ବାପାଙ୍କ ପାଖକୁ ଲେଖିଲେ, "ଯଦି ଆପଣଙ୍କର ମୋ ଉପରେ ବିଶ୍ୱାସ ନାହିଁ, ତେବେ



ଆସନ୍ତା ମାସରୁ ମୋ ପାଖକୁ ଆଉ ଟଙ୍କା ପଠାଇବେ ନାହିଁ । ମୋର ପାଠ ପଢ଼ିବା ପାଇଁ ମୁଁ ନିଶ୍ଚୟ କିଛି ଗୋଟିଏ ବାଟ କାଢ଼ିବାକୁ ଚେଷ୍ଟା କରିବି । ଯଦି ସେଥିରେ ଅସମର୍ଥ ହେବି, ତେବେ ପାଠପଢ଼ା ବନ୍ଦ କରି ଭାରତ ଫେରିଯିବି । ଏହା ମୋର ଶେଷ ନିଷ୍ପତ୍ତି ।'' ଯୁବକଜଣଙ୍କ ଜାଣିଥିଲେ ଯେ ତାଙ୍କ ପ୍ରେରିତ ଚିଠି ବାପାଙ୍କ ମନରେ ଗଭୀର ଆଘାତ ଲାଗିବ । ସେ ଜଣେ ସ୍ୱାଭିମାନୀ ପୁତ୍ର ଭାବରେ ତାଙ୍କୁ ଏପରି ଚିଠି ଲେଖିବା ଛଡ଼ା ଅନ୍ୟ ଉପାୟ କିଛି ନ ଥିଲା ।

ଚିଠିଟି ଠିକ୍ ସମୟରେ ପିତାଙ୍କ ପାଖରେ ପହଞ୍ଚିଲା । ତାଙ୍କ ପିତା ଦୁଃଖ ନ କରି ଗର୍ବ ଅନୁଭବ କଲେ । ତାଙ୍କ ସ୍ୱାଭିମାନୀ ପୁତ୍ରର ଚିଠିରୁ ସେ ଜାଣିପାରିଲେ ଯେ ସେ ପଠାଉଥିବା ଟଙ୍କା ତାଙ୍କ ପୁତ୍ର ଉଚିତ୍ ମାର୍ଗରେ ଖର୍ଚ୍ଚ କରୁଛି । ପାଠ ପଢୁଛି । ବିପଥଗାମୀ ହେବାର ସୁଯୋଗ ନାହିଁ । ବଦ୍‌ଖର୍ଚ୍ଚ କରିବା ସେ ଜାଣିନି । ପିତା ତାଙ୍କର ଦୁଃଖ ପ୍ରକାଶ କରିବା ପରିବର୍ତ୍ତେ ସ୍ୱାଭିମାନୀ ପୁଅର ଏପରି ଚିଠି ପଢ଼ି ନିଜକୁ ଗର୍ବିତ ମନେକଲେ । ସେ ଚିଠି ଲେଖି ଜଣାଇଦେଲେ ଯେ, "ତୁ ମୋର ଯୋଗ୍ୟପୁତ୍ର । ମୁଁ ଜାଣେ ମୁଁ ପଠାଉଥିବା ଟଙ୍କା ତୁ ଉଚିତ୍ ମାର୍ଗରେ ଖର୍ଚ୍ଚ କରୁଛୁ । ତୁ ମୋର ନାଆଁ ରଖିବୁ । ଜଣେ ଭଲ ମଣିଷ ହେବୁ ।" ପିତାଙ୍କ ଚିଠି ପାଇ ପୁତ୍ର ଖୁସି ହୋଇଗଲେ । ପିତାଙ୍କ ବାତ୍ସଲ୍ୟ ମମତାଭରା ଚିଠି ପଢ଼ି ତାଙ୍କର ସମସ୍ତ କ୍ଷୋଭ ଦୂର ହୋଇଗଲା । ଏହି ଯୁବକ ଥିଲେ ଆମ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ ଆଉ ପିତା ଥିଲେ ଖ୍ୟାତନାମା ବାରିଷ୍ଟର ମୋତିଲାଲ ନେହେରୁ ।

ପ୍ରକୃତରେ ପିଲାମାନେ କଲେଜରେ ପଢୁଥିବା ସମୟରେ ପିତାମାତା, ଅଭିଭାବକମାନଙ୍କର ସ୍ନେହ, ସଦିଚ୍ଛା, ଉପଦେଶ ପିଲାମାନଙ୍କ ପାଇଁ ଉଚିତ୍ ମାର୍ଗଦର୍ଶକ ଭାବରେ କାମ କରିଥାଏ । ଯେଉଁମାନେ ପିତାମାତାଙ୍କ ଉପଦେଶ ଗ୍ରହଣ ନ କରି ଟଙ୍କାପଇସା ଅବାଟରେ ଖର୍ଚ୍ଚ କରନ୍ତି, ସେମାନେ ବିପଥଗାମୀ ହୋଇ ଜଣେ ଭଲ ମଣିଷ ହୋଇପାରନ୍ତି ନାହିଁ । ପିଲାମାନେ ଏ ଦିଗ ପ୍ରତି ସଚେତନ ହେବା ଉଚିତ ।

*ଏଲ୍- ୩୮, ବରମୁଣ୍ଡା, ଭୁବନେଶ୍ୱର*

## ଅଛି–ନାହିଁ

ପାର୍ଶ୍ୱରେ ଦିଆଯାଇଥିବା ଦୁଇଟି ଚିତ୍ର ମଧ୍ୟରେ ଅତି କମ୍‌ରେ ୧୦ଟି ପ୍ରଭେଦ ଅଛି ।

ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଖୋଜି ବାହାର କରନ୍ତୁ ତ !

(ଉତ୍ତର ୨୨ ପୃଷ୍ଠାରେ)

# ମହଙ୍ଗା ମନୋରଂଜନ

ବି. ନିରୁପମା

ଆଜି ବଡ଼ ଅଫିସର ଛୁଟିରେ । ତେଣୁ କାର୍ଯ୍ୟାଳୟରେ ବେଶି ଗହଳି ନାହିଁ । କର୍ମଚାରୀମାନଙ୍କ ଉପରେ କାମର ବିଶେଷ ଚାପ ନାହିଁ । ସମୟର ସଦୁପଯୋଗ ପାଇଁ ଟେବୁଲ ଉପରେ ମୁଣ୍ଡ ରଖି ଘୁମେଇ ପଡ଼ିଥାନ୍ତି ସୁବୋଧବାବୁ ।

'ପଇସାଟିଏ ଦିଅ ବାବୁ'– ଡାକରେ ଚମକି ଉଠି ପଡ଼ିଲେ ସେ । ଗୋଡ଼କୁ ଧରି ବସି ପଡ଼ିଛି ଆଠ ଦଶବର୍ଷର ଝିଅଟିଏ । ମୁଣ୍ଡରେ ଗୋଛାଏ ଅଲରା ବାଳ । ଜନ୍ମରୁ ଥରେ ହେଲେ ତେଲ ଟିକେ ଲାଗିନି ବୋଧେ । ଦେହରେ ମଇଳା ଛିଣ୍ଡା ଜାମା ।

''କାଲିଠାରୁ କିଛି ଖାଇନି ବାବୁ, ଭାରି ଭୋକ ।'' ଗୋଡ଼କୁ ଭିଡ଼ି ଧରି ନେହୁରା ହେଲା ଝିଅଟି । ଏଇ ଦରିଦ୍ର ବାରବୁଲା ଭିକାରୀ ଶ୍ରେଣୀୟ ମଣିଷମାନଙ୍କୁ ଆଦୌ ପସନ୍ଦ କରନ୍ତି ନାହିଁ ସୁବୋଧବାବୁ । ଭାରି ଇଚ୍ଛା ହୁଏ ତାଙ୍କ ସହ ଟିକେ ମଜା କରିବାକୁ; ହେଲେ କାର୍ଯ୍ୟବ୍ୟସ୍ତତା ମଧ୍ୟରେ ଏସବୁ ସମ୍ଭବ ହୁଏନା । ବିନା କାମରେ ଅଫିସ୍‌ରେ ବସି ଅଳସ ଭାଙ୍ଗିବା ଅପେକ୍ଷା ଏ ଭିକାରୀ ଛୁଆ ମାଧ୍ୟମରେ କିଛିଟା ମନୋରଂଜନ କରିବା ଶ୍ରେୟସ୍କର ବୋଲି ସେ ମନେ ମନେ ସ୍ଥିର କଲେ ।

ବେଶ୍ ଆଗ୍ରହର ସହିତ ପିଲାର ପରିବାରଠୁ ପାଠପଢ଼ା ପର୍ଯ୍ୟନ୍ତ ସବୁ ବିଷୟରେ ପଚାରିଲେ ସୁବୋଧବାବୁ । ପିଲାଙ୍କ ପାଠପଢ଼ା ପାଇଁ ସରକାରଙ୍କ ଯୋଜନାଠୁ ଆରମ୍ଭ କରି ବିଭିନ୍ନ ସୁବିଧା ସୁଯୋଗ ଉପରେ ଆଲୋକପାତ କରିବାକୁ ଚାହୁଁଥିଲେ ସେ । ହେଲେ ଛୁଆଟାର ମୁଣ୍ଡରେ କିଛି ବି ପଶିଲାନି । ଟଙ୍କାଟେ ଦେବାକୁ ସେ ପୁଣି ନେହୁରା ହେଲା ।

''ଆଚ୍ଛା, ଏମିତି ମାଗଣାରେ ସବୁଦିନ କିଏ ତୋତେ ଖାଇବାକୁ ଦେବ ମ ! କିଛି କାମଧନ୍ଦା ଶିଖିଲୁଣି କି ନାହିଁ? ଦେଖ୍, ଯଦି ତୁ ଏ ଅଫିସ ଘରଟା ଝାଡୁ ମାରିଦେବୁ, ମୁଁ ତୋତେ ଦଶଟଙ୍କା ଦେବି ।'' ସୁବୋଧ ବାବୁ ଲୋଭ ଦେଖାଇ କାମଟି କରାଇବାକୁ ଚାହିଁଲେ ।

ଝିଅଟି ତୁରନ୍ତ କାମରେ ଲାଗିଗଲା । ଷ୍ଟୁଲରେ ଚଢ଼ି କାନ୍ଥରୁ ବୁଢ଼ିଆଣୀ ଜାଲ ସବୁ ସଫା କଲା । ଅଫିସ ଗୃହର ଚଟାଣରେ ଝାଡୁମାରିଲା । ବାବୁଙ୍କ ନିର୍ଦ୍ଦେଶମତେ ଏଣେତେଣେ ପଡ଼ିଥିବା ଫାଇଲ ସବୁକୁ ସଜେଇ ରଖିଲା । ବହିଥାକରୁ ଧୂଳି ଝାଡ଼ିଲା । କାମ ସାରି ବାହାର ପାଖ ନଳରୁ ପାଣି ପେଟେ ପିଇଦେଇ ସେ ପାଉଣା ପାଇଁ ବାବୁଙ୍କ ସାମ୍ନାରେ ପୁଣି ହାତ ପାତିଲା ।

''ଆରେ ଏତିକି କାମରେ ଏମିତି ହାଲିଆ ହୋଇଗଲେ ଆଉ କି କାମ କରିବୁ ଯେ ? ହଉ କାମ କଥା ଛାଡ଼ । କିଛି ନାଚଗୀତ ଯଦି ଜାଣୁ, ଟିକେ ଦେଖାଇଲୁ ।'' ବାବୁ କହିଲେ ।

ବାବୁଙ୍କ କଥା ନ ସରୁଣୁ ଉଚ୍ଚ କଣ୍ଠରେ ଗୀତ

ବୋଲିବା ଆରମ୍ଭ କରିଦେଲା ବାଳିକାଟି । କାଳେ ଅନ୍ୟ କୋଠରିରେ ଥିବା କର୍ମଚାରୀ ଗୀତଗାଇବା ଶୁଣି ଏ କୋଠରିକୁ ଚାଲିଆସିବେ, ତେଣୁ ଗୀତକୁ ଅଧାରୁ ବନ୍ଦ ରଖିବାକୁ ନିର୍ଦ୍ଦେଶ ଦେଲେ ସୁବୋଧବାବୁ । ଝିଅଟି ହାତରେ ଟଙ୍କିକିଆ ମୁଦ୍ରାଟିଏ ଧରେଇଦେଇ ଅଫିସ ଛାଡ଼ି ଚାଲିଯିବାକୁ ଇସାରା କଲେ ସେ ।

କିନ୍ତୁ ଝିଅଟି ପୁଣି ଦାବି କଲା ଦଶଟଙ୍କା ପାଇଁ । ଏଥର ସତସତିକା ରାଗିଗଲେ ସୁବୋଧବାବୁ । ଟାଗିଦ୍ କଲା ସ୍ୱରରେ କହିଲେ, ''ଏଠାରୁ ଚୁପଚାପ୍ ଯିବୁ ନା ମଜା ଦେଖିବୁ ଏଇନେ ?'' ଏଥର ଝିଅଟି ହାତକୁ ଟାଣି ଟାଣି କୋଠରି ବାହାରକୁ ସେ ଠେଲିଦେଲେ । ହଠାତ୍ କରୁଣ ଚିତ୍କାରରେ ଅଫିସଗୃହ କମ୍ପି ଉଠିଲା । ତଣ୍ଟି ଫଟେଇ କାନ୍ଦିବା ସହ ଅଫିସ ବାରଣ୍ଡାରେ କୋଡ଼ିକଚାଡ଼ି ହୋଇ ଗଡ଼ିବାକୁ ଆରମ୍ଭ କଲା ଝିଅଟି । ସୁବୋଧବାବୁ କ'ଣ କରିବେ କିଛି ଚିନ୍ତା କରିବା ପୂର୍ବରୁ ଅନ୍ୟ କୋଠରିରେ ଥିବା କର୍ମଚାରୀ ତଥା କିଛି ଦେଖଣାହାରୀ ଜମା ହୋଇଗଲେ । ସମସ୍ତେ ପ୍ରଶ୍ନିଳ ଦୃଷ୍ଟିରେ ଚାହିଁଥାନ୍ତି । ଅଫିସର ସବୁ କାମ କରାଇବା ଠାରୁ ଆରମ୍ଭ କରି ପଇସା ନ ଦେଇ ଧକ୍‌କା ଦେବା ପର୍ଯ୍ୟନ୍ତ ଶେଷକୁ ଗୋଟି ଗୋଟି କରି ସବୁକଥା ବର୍ଣ୍ଣନା କଲା ଛୋଟପିଲାଟି । କିଛି ବାହାନା କାଢ଼ି ନିଜକୁ ନିର୍ଦ୍ଦୋଷ ବୋଲି ପ୍ରମାଣିତ କରିବାକୁ ସୁବୋଧବାବୁଙ୍କ ପାଖରେ କୌଣସି ଭାଷା ନଥିଲା ।

ସମସ୍ତଙ୍କ ସମବେଦନା ଓ ସହାନୁଭୂତି କେବଳ ସେଇ ଝିଅଟି ପାଇଁ । ନିଜ ନିଜ ପକେଟ୍‌ରୁ କିଛି କିଛି ପଇସା ଆଣି ଝିଅଟିକୁ ଦେଲେ ସେମାନେ । ଏଥର ଝାଡ଼ିଝୁଡ଼ି ହୋଇ ଉଠିଲା ଝିଅଟି । ସବୁ ପଇସାକୁ ଏକାଠି କରି ଚଞ୍ଚଳ ଗତିରେ ଚାଲିଗଲା ସେ ସ୍ଥାନରୁ ।

ସହକର୍ମୀମାନଙ୍କ କଟାକ୍ଷ, ଉପରିସ୍ଥ କର୍ମଚାରୀମାନଙ୍କ ଭର୍ତ୍ସନାସବୁ ନୀରବରେ ଶୁଣି ମୁଣ୍ଡ ତଳକୁ କରି ଦୋଷ ସ୍ୱୀକାର କରିବା ଛଡ଼ା ଅନ୍ୟ ଗତି ନଥିଲା ସୁବୋଧବାବୁଙ୍କ ପାଖରେ । ଅନ୍ୟର ଦରିଦ୍ରକୁ ପରିହାସ କରି ସରଳତାର ସୁଯୋଗ ନେଇ, ବିଦ୍ରୂପ ଦ୍ୱାରା ମନୋରଂଜନ କରିବାର ଚିନ୍ତାଧାରା ତାଙ୍କୁ ବେଶ ମହଙ୍ଗା ପଡ଼ିଲା । ସେ ନିଜ କୃତକର୍ମ ପାଇଁ ଲଜ୍ଜିତ ଅନୁଭବ କଲେ ।

*ମାମୁରିଆ, ଛେଣ୍ଡିପଦା, ଅନୁଗୋଳ- ୭୫୯୧୨୪*

---



ନୂଆ ଚାକରକୁ ବାବୁ ତା ଦରମା କଥା କହୁଥିଲେ । ବର୍ତ୍ତମାନ ଆମେ ତୋତେ ମାସକୁ ଶହେ ଟଙ୍କା ଦରମା ଦେବୁ । ବର୍ଷକ ପରେ ଶହେ ପଚାଶ କରି ଦେବୁ ।

ତାହା ଶୁଣି ଚାକର କହିଲା– ଠିକ୍ ଅଛି ଆଜ୍ଞା ! ତାହାହେଲେ ମୁଁ ବର୍ଷକ ପରେ ଆସିବି ।

ଡାକ୍ତର– (ମୋଟା ରୋଗୀକୁ) ମୁଁ ଗ୍ୟାରେଣ୍ଟି ଦେଉଛି, ଛଅମାସ ପରେ ଆପଣ ପତଳା ହୋଇଯିବେ ।
ରୋଗୀ– କେତେଟଙ୍କା ଦେବାକୁ ପଡ଼ିବ ?
ଡାକ୍ତର– ଔଷଧ ଓ ଫିସ୍ ମିଶି ଦୁଇହଜାର ଟଙ୍କା ।
ରୋଗୀ– (ଆଖି ତରାଟି ଦେଇ) ଏଇ କଥା ମାସେ ଭାବିଲେ ତ ମୁଁ ଛାଏଁ ପତଳା ହୋଇଯିବି ।

ପାଠକ- (ଲେଖକକୁ) କ୍ଷମା କରିବେ ମହାଶୟ, ଆପଣ ନିଜ ସ୍ତ୍ରୀଙ୍କୁ ଏ ବହିଟି ଉତ୍ସର୍ଗ କରିବାର ବିଶେଷ କିଛି କାରଣ ଅଛି କି ?
ଲେଖକ- ମୋ ସ୍ତ୍ରୀ ଅନୁପସ୍ଥିତି ନଥିଲେ ମୁଁ ଏ ବହି ଲେଖିପାରି ନଥାନ୍ତି ।

**-- ଜଗବନ୍ଧୁ ବେହେରା**

# ବୁଦ୍ଧି ପରୀକ୍ଷା

ଶ୍ରୀ ସହଦେବ ସାହୁ

୧ । ସେଦିନ ଦୀନବନ୍ଧୁ ଶୀଘ୍ର ଶୀଘ୍ର ଯାଉଥିବାର ଦେଖି ମୁଁ ପଚାରିଲି, ''କିରେ, କେତେ ଦୂର ଯିବାର ଅଛି କି ?''

ଦୀନବନ୍ଧୁ ସିଧାସଳଖ ଉତ୍ତରଦେବାର ଲୋକ ନୁହେଁ । ସେ କହିଲା, ''ଯଦି ମୁଁ ଘଣ୍ଟାକୁ ଚାରି କିଲୋମିଟର ବେଗରେ ଚାଲିବି, ନିର୍ଦ୍ଦିଷ୍ଟ ସମୟର ପାଞ୍ଚ ମିନିଟ୍ ପରେ ଲକ୍ଷ୍ୟସ୍ଥଳରେ ପହଞ୍ଚିବି; କିନ୍ତୁ ଯଦି ଘଣ୍ଟାକୁ ପାଞ୍ଚ କିଲୋମିଟର ବେଗରେ ଚାଲିବି, ତେବେ ଦଶମିନିଟ୍ ଆଗରୁ ପହଞ୍ଚିବି ।'' ତେବେ ଦୀନବନ୍ଧୁ କେତେ ଦୂର ଯାଉଥିଲା ?

-- କ) ୧୦କି.ମି., ଖ) ୧୫ କି.ମି., ଗ) ୫ କି.ମି., ଘ) ୧ କି.ମି. ।

୨ । ଦୁଇଜଣ ଲୋକ ଗୋଟେ ଗାତ ଖୋଳିବାକୁ ୫ଦିନ ନିଅନ୍ତି । ଅଧେ ଗାତ ଖୋଳିବାକୁ ସେମାନେ କେତେଦିନ ନେବେ ?-- କ) ସଉଆ ଦିନେ ଖ) ଅଢ଼େଇ ଦିନ, ଗ) ପାଞ୍ଚଦିନ, ଘ) କୌଣସିଟି ଉତ୍ତର ଠିକ୍ ନୁହେଁ ।

୩ । ଜଣେ ଅଣ୍ଡା ବିକାଳି ୬ଟି ପାଛିଆରେ କୁକୁଡ଼ା ଓ ହଂସ ଅଣ୍ଡା ବିକିବାକୁ ଆଣିଥିଲା । କୁକୁଡ଼ା ଅଣ୍ଡା ସାଙ୍ଗରେ ହଂସ ଅଣ୍ଡା ମିଶି ନଥିଲା । ଛଅଟି ପାଛିଆରୁ ପ୍ରତ୍ୟେକରେ କେତେ ଅଣ୍ଡା ଥିଲା, ତାହା ତଳେ ଦିଆଯାଇଛି । ସେଥିରୁ ଗୋଟିଏ ପାଛିଆକୁ ଦେଖାଇ ସେ କହିଲା, ''ମୁଁ ଯଦି ଏ ପାଛିଆଟା ବିକିଦେବି, ବାକି ପାଛିଆଗୁଡ଼ିକରେ ହଂସ ଅଣ୍ଡା ଭାଗେ ଓ କୁକୁଡ଼ା ଅଣ୍ଡା ଦୁଇଭାଗ ରହିଯିବ ।'' ସେ କେଉଁ ପାଛିଆ କଥା କହୁଥିଲା ?

ପାଛିଆ ୧) ୫ ଅଣ୍ଡା, ୨) ୬, ୩) ୧୨, ୪) ୧୪, ୫) ୨୩ ଓ ପାଛିଆ ୬)ରେ ୨୯ଟି ।

୪ । ''ଅଜିତ ସମ୍ବଲପୁରୀ ପାଟ କିଣିଛି'' ନ କହି ମୋର ସାଙ୍ଗ ଠାରରେ କହିଲା, ''ଭଛିପ କନ୍‌ଶତୁଟୀ ତାର ସିଡ଼ିଜି ।'' ସେ କହିବାକୁ ଭୁଲିଗଲା ଯେ ଅଜିତ 'କଟକ'ରୁ ସମ୍ବଲପୁରୀ ପାଟ କିଣିଛି । ଠାରରେ କ'ଣ କହିଥା'ନ୍ତା ?-- କ) କରକଟୁ ଖ) ସରଣରୁ ଗ) ସରସଟୁ, ଘ) ଏ ଶବ୍ଦ ପାଇଁ ଠାରରେ ଅକ୍ଷର ନାହିଁ ।

୫ । ପିତାମାତାଙ୍କର ବୟସ ମିଶି ୫୧ବର୍ଷ; ପିତା କନ୍ୟାଙ୍କ ବୟସ ମିଶି ୩୧ବର୍ଷ । କନ୍ୟାର ଜନ୍ମ ସମୟରେ ମାତାଙ୍କ ବୟସ କେତେ ହୋଇଥିଲା ? -- କ) ୨୪, ଖ) ୧୭, ଗ) ୨୦, ଘ) ପ୍ରଶ୍ନଟି ବୁଝି ହେଉନାହିଁ ।

୬ । ଗୋଟିଏ କୁକୁର ୫ମିଟର ଲମ୍ବ ଦଉଡ଼ିରେ ବନ୍ଧା ହୋଇଥିଲେ ମଧ୍ୟ ୬ମିଟର ଦୂରକୁ ଚାଲିଯାଇ ପାରିଲା । ଏହା କିପରି ସମ୍ଭବ ?-- କ) ଦଉଡ଼ି ଛିଡ଼ି ଯାଇଥିବ, ଖ) ଇଲାଷ୍ଟିକ ଦଉଡ଼ି ହୋଇଥିବ, ଗ) ଦଉଡ଼ିର ଗୋଟିଏ ମୁଣ୍ଡ ଖୋଲା ଥିବ, ଘ) ଦଉଡ଼ିଗଣ୍ଠି ହୁଗୁଳା ହୋଇଯାଇଥିବ ।

---

**ଅଛି-ନାହିଁର ଉତ୍ତର--** ୧) ଉପରେ ଗୋଟିଏ ପତ୍ର ନାହିଁ. ୨) ଘୋଡ଼ାର ବାମ କାନ ଅଲଗା ଭାବରେ ଅଛି, ୩) ବାଡ଼ ପାଖରେ ପଥର ନାହିଁ, ୪) ଘୋଡ଼ାର ଲଗାମ୍‌ର ରଙ୍ଗ ଅଲଗା, ୫) ଘୋଡ଼ା ଲାଞ୍ଜର ଅବସ୍ଥା ଭିନ୍ନ, ୬) ଘୋଡ଼ା ଗୋଡ଼ ପାଖରେ ପଥର ନାହିଁ, ୭) ତଳେ ପଡ଼ିଥିବା ପତ୍ରର ଜାଗା ଭିନ୍ନ, ୮) ଘୋଡ଼ାର ସାମ୍ନା ଦୁଇଟି ଗୋଡ଼ର ଅବସ୍ଥା ଭିନ୍ନ, ୯) ତଳେ ପଡ଼ିଥିବା ଦୁଇଟି ପତ୍ର ସମାନ ନୁହେଁ, ୧୦) ଘୋଡ଼ା ବେକର ଚଅଁର କାନମୂଳରୁ ବାହାରିନାହିଁ ।

# ଚଢ଼େଇକୁ ଦେଲି ଉଡ଼େଇ

ଶ୍ରୀ ଶତ୍ରୁଘ୍ନ ପଟ୍ଟନାୟକ

ଦାଦା ଆଣିଥିଲେ ଚଢ଼େଇ
ଦେଲେ ମୋ ହାତକୁ ବଢ଼େଇ
ପଞ୍ଜୁରିରେ ଦେଇ ଗଢ଼େଇ
ଖାଦ୍ୟଦ୍ରବ୍ୟ ଦେଲି କୁଢ଼େଇ
ଆଣି ସଢ଼େଇ ପାଣି ଦେଲି ଢାଳି ଆଡ଼େଇ ।

ବହୁତ ଆଦରେ ତା ପାଇଁ
ଫଳମୂଳ ଆଣିଲି ଯାଇ
ମିଠା ଫଳ ତାହାକୁ ଦେଇ
ଖାଇଲା ସେ ଥଣ୍ଟରେ ନେଇ
ଶଙ୍କି ବିଲେଇ ରହିଥିଲା ତାକୁ ଅନେଇ ।

ରାତି ହେଲା ପଡ଼ିଲି ଶୋଇ
ରେଜେଇଟା ହୋଇ ଘୋଡ଼େଇ
ଗାଢ଼ ନିଦେ ମଗନ ହୋଇ
ସପନରେ ଦେଖିଲି ମୁହିଁ
ଖାଲି ମୋ ପାଇଁ ଘରଯାକ ଅନ୍ଧାର ଥାଇ ।

ହାତଗୋଡ଼ ମୋ ବାନ୍ଧି ଦେଇ
କିଏ ଦେଲା ମୋତେ ପକାଇ
ନ ପାରିଲି ହାତ ହଲାଇ
ବିକଳରେ କାନ୍ଦିଲି ମୁହିଁ
ଛାଡ଼ିବା ପାଇଁ କାନ୍ଦୁଥିଲି ମୁଁ କଇଁ କଇଁ ।

ନିଦ ଭାଙ୍ଗି ଦେଖିଲି ଯାଇ
ବୋଉବାପା ଅଛନ୍ତି ଚାହିଁ
ସପନର କଥାକୁ କହି
ସବୁକଥା ଦେଲି ବତାଇ
ଆଉ ନ ଶୋଇ ସକାଳକୁ ରହିଲି ଚାହିଁ ।

ବେଗ ହୋଇ ସକାଳେ ଯାଇ
ପଞ୍ଜୁରିର ଦ୍ୱାର ମେଲାଇ
ଚଢ଼େଇକୁ ଦେଲି ଉଡ଼େଇ
ଆନନ୍ଦେ ସେ ଟିକି ଚଢ଼େଇ
କାହିଁ ନ ଚାହିଁ ଉଡ଼ିଗଲା ଆକାଶ ଛୁଇଁ ।

ସ୍ୱାଧୀନତା ଆନର ପାଇଁ
ନିଜ ସୁଖ ଦେବା ହଜାଇ
ଆଜି ସେହି ଟିକି ଚଢ଼େଇ
ଦେଲା ମୋର ଜ୍ଞାନ ବଢ଼େଇ
ସବୁରି ପାଇଁ ଦୟାଭାବ ରଖିବା ଭାଇ ।

*ସଂପାଦକ, ଉତ୍କଳ ସମ୍ମିଳନୀ, ଝାଞ୍ଜିରୀମଙ୍ଗଳା, କଟକ-୯*

# ଆମ ଜାତୀୟ ପତାକା ତ୍ରିରଙ୍ଗାର ପ୍ରସ୍ତୁତି

ଡାକ୍ତର ନିମାଇଁ ଚରଣ ପରିଜା

ଆମ ଜାତୀୟ ପତାକା ଗୋଟିଏ ସମାନ୍ତରାଳ ଆୟତାକୃତ ଖଦି କପଡ଼ାରେ ତିଆରି– ଯେଉଁଥିରେ ଉପରେ କମଳାରଙ୍ଗ, ମଝିରେ ଧଳା ଓ ତଳେ ସବୁଜ ରଙ୍ଗର ସମାନ୍ତରାଳ ପଟି ଥାଏ । ଧଳା ପଟି ଉପରେ ମଝିରେ ଥାଏ ଅଶୋକ ଚକ୍ର । ଚକ୍ରରେ ଥାଏ ୨୪ଟି ଅର । ଏହି ଅଶୋକ ଚକ୍ରର ରଙ୍ଗ ନୀଳରଙ୍ଗ (ନେଭି ବ୍ଲୁ) । ଏହାର ଲମ୍ବ ଓ ପ୍ରସ୍ଥ ୩:୨ ଅନୁପାତରେ ପ୍ରସ୍ତୁତ କରାଯାଇଥାଏ । ଏହି ଡିଜାଇନ ବା ପ୍ରସ୍ତୁତ ପ୍ରଣାଳୀ କରିଥିଲେ 'ପିଙ୍ଗଳା ଭେଙ୍କୟା' । ୧୯୪୭ ମସିହା ଜୁଲାଇ ୨୨ ତାରିଖରେ ସମ୍ବିଧାନ ସଭାରେ ଗୃହୀତ ହୋଇ ଏହା 'ଭାରତର ଜାତୀୟ ପତାକା'ର ମାନ୍ୟତା ପାଇଥିଲା । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଏହାକୁ ଅଗଷ୍ଟ ୧୫ ତାରିଖ ସକାଳ ୮ଟାରେ ଦିଲ୍ଲୀର ଲାଲକିଲ୍ଲା ଉପରୁ ଉଡ଼ାଇ ଦେଶବାସୀଙ୍କୁ ସମ୍ବୋଧିତ କରିଥିଲେ । ସେହିଦିନ ଠାରୁ ଆମର ଜାତୀୟ ପତାକାର ମର୍ଯ୍ୟାଦା ଓ ସମ୍ମାନ ରକ୍ଷା କରିବା ଆମ ସମସ୍ତଙ୍କର ଜାତୀୟ କର୍ତ୍ତବ୍ୟ । ଏହା ପାଇଁ ଗର୍ବିତ ହେବାର ମାନସିକତା ଆମମାନଙ୍କଠାରେ ସ୍ୱତଃସ୍ଫୂର୍ତ୍ତ ଭାବେ ଦେଖାଦିଏ । ଆମ ଜୀବନରେ ଏହା ଏକ ମର୍ଯ୍ୟାଦାଜନକ ସ୍ଥାନ ନେଇଥାଏ ।

ନିୟମ ଅନୁଯାୟୀ 'ଭାରତର ପତାକା ବୋର୍ଡ' ଏହାର ପ୍ରସ୍ତୁତି ବିଷୟରେ ନିର୍ଦ୍ଦେଶ ଦେଇଥାଏ । କାରଣ ସରକାରଙ୍କ ବିନା ଅନୁମତିରେ ଏହାର ପ୍ରସ୍ତୁତି କରିବା ଅନ୍ୟାୟ ଓ ଦଣ୍ଡନୀୟ । ଏହା କେବଳ ହାତବୁଣା ଖଦିରେ ତିଆରି ହୋଇଥାଏ । ଏହି ପତାକା ନିର୍ମାଣ 'ଭାରତୀୟ ଷ୍ଟାଣ୍ଡର୍ଡ ବ୍ୟୁରୋ' ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଏହା କେବଳ ସ୍ୱାଧୀନତା ପ୍ରାପ୍ତି ଦିନଠାରୁ କର୍ଣ୍ଣାଟକର ଖଦି ଗ୍ରାମଦ୍ୟୋଗ ସଂଯୁକ୍ତ ସଂଘ ଦ୍ୱାରା ପ୍ରସ୍ତୁତ ହୋଇଆସୁଛି । ଏହି ସଂସ୍ଥା ନଭେମ୍ବର ମାସ ୧ ତାରିଖ ୧୯୫୭ରେ ପ୍ରତିଷ୍ଠିତ ହୋଇଥିଲା । ଏହାଦ୍ୱାରା ଖଦି ବସ୍ତ୍ର ସାଙ୍ଗକୁ ଅନ୍ୟାନ୍ୟ ଖଦିବୁଣା ଜିନିଷ ତିଆରି ହୋଇଥାଏ । ଗ୍ରାମାଞ୍ଚଳର ଅନେକ ବେକାର ଯୁବକ-ଯୁବତୀମାନଙ୍କୁ ରୋଜଗାର କରିବା ପାଇଁ ଓ ଏଥିରେ ଚାକିରି ଦେବା ପାଇଁ ଏହା ଉଦ୍ଦିଷ୍ଟ ଥିଲା । ଏହା କୌଣସି ସରକାରୀ ସଂସ୍ଥା ନୁହେଁ । ଉନ୍ନତମାନର ଖଦି ପ୍ରସ୍ତୁତ କରୁଥିବାରୁ ଭାରତ ସରକାର ଏହି ସଂସ୍ଥାକୁ ପତାକା ତିଆରି ପାଇଁ



ବାଛିଥିଲେ । ଯେଉଁ ପତାକା ଏଠାରେ ତିଆରି ହୁଏ, ତାହା ୧୭ଟି ଗୁଣାତ୍ମକ ମାନ ନିର୍ଦ୍ଧାରଣ ସଂସ୍ଥା ଦ୍ୱାରା ପରୀକ୍ଷିତ ହୋଇଥାଏ । ଏହା ସତ୍ତ୍ୱେ ବି ୧୦ ଶତାଂଶ ତିଆରି ପତାକାକୁ ଆଗ୍ରାହ୍ୟ କରାଯାଇଥାଏ । ଭାରତରେ ୭୦ତମ ସ୍ୱାଧୀନତା ଦିବସ ଅବସରରେ ବର୍ତ୍ତମାନ ଏହି ସଂସ୍ଥାର ଚେୟାରମ୍ୟାନ ଅଛନ୍ତି ଏଚ୍. ହନୁମନ୍ତାପା ।

ଏହା ହେଉଛି ଏକମାତ୍ର ସଂସ୍ଥା, ଯିଏକି ଜାତୀୟ ପତାକା ତିଆରି ପାଇଁ ଅନୁମତି ପତ୍ର ପାଇଛି । ଏହି ପତାକାର ମାନ ରକ୍ଷା କରିବା, ଉପଯୁକ୍ତ ସମ୍ମାନର ସହ ପ୍ରସ୍ତୁତ କରିବା ପାଇଁ ଏକ ଅଧିନିୟମ ଜାରି କରାଯାଇଛି । ସେଥିପାଇଁ 'ବ୍ୟୁରୋ ଅଫ ଇଣ୍ଡିଆନ ଷ୍ଟାଣ୍ଡାର୍ଡ' ଏହି ସଂସ୍ଥାକୁ ଏକ ସାର୍ଟିଫିକେଟ୍ ଦେଇଥାନ୍ତି । ଆଇନ ଅନୁସାରେ ଏହି ପତାକା କେବଳ ହାତବୁଣା ଖଦି, ସିଲକ୍ ବା ଉଲ୍‌ରେ ତିଆରି ହୋଇଥାଏ । ଏହାର ମାନ ୧୯୬୮ ମସିହାରୁ ନିର୍ଦ୍ଧାରଣ କରାଯାଇଛି ଓ ୨୦୦୮ ମସିହାରେ ପୁନଃ ନିର୍ଦ୍ଧାରିତ ହୋଇଛି । ୯ପ୍ରକାର ଆକାରର ପତାକା ପ୍ରସ୍ତୁତି ପାଇଁ ଆଇନରେ ସୁପାରିସ ଅଛି ।

ହାତ ବୁଣା ଖଦି କପଡ଼ା ବ୍ୟତୀତ ଅନ୍ୟ କୌଣସି କପଡ଼ାରେ ହେଲେ ଏହା ଅପରାଧ ଓ ଆଇନ ଅନୁସାରେ ଜଣେ ୩ବର୍ଷ ଜେଲଦଣ୍ଡ ଭୋଗ କରିବ ବୋଲି କୁହାଯାଇଛି । ପତାକା ପ୍ରସ୍ତୁତି ପାଇଁ ଦୁଇପ୍ରକାର ଖଦି ବ୍ୟବହାର କରାଯାଇଥାଏ । ଗୋଟିଏ ହେଉଛି ଖଦି ବଣ୍ଟିଙ୍ଗ୍, ଯାହାଦ୍ୱାରା ପତାକାର ପଟି ତିଆରି ହୁଏ ଓ ଆରଟି ହେଉଛି ଖଦି ଡକ୍ । ଏହା ଏକପ୍ରକାର ରଙ୍ଗିନ କପଡ଼ା, ଯାହା ପତାକାକୁ ପତାକା ସ୍ତମ୍ଭରେ ବାନ୍ଧିବାରେ ସାହାଯ୍ୟ କରେ । ପତାକା ତିଆରିରେ ୧୫୦ଖଣ୍ଡ ସୂତା ପ୍ରତିବର୍ଗ ସେଣ୍ଟିମିଟରରେ ରହିବା କଥା । ଏକ ବର୍ଗଫୁଟ କପଡ଼ାର ଓଜନ ୨୦୫ ଗ୍ରାମ ହେବାର ନିୟମ ଅଛି । ଏହା ଅତି ଯତ୍ନର ସହିତ ତିଆରି କରାଯାଏ । ପତାକାର ମୋଟ୍ ଓ ସମତା ଉପରେ ଜୋର୍ ଦିଆଯାଇଥାଏ । ଏହାର ବୁଣା ସୂତା ଓ ରଙ୍ଗ ଦେବାର ପଦ୍ଧତିରେ ମଧ୍ୟ ମାନ ନିର୍ଦ୍ଧାରିତ ହୋଇଥାଏ । ଖଦି କପଡ଼ାର ରଙ୍ଗ ବର୍ଷାରେ ଧୋଇ ନ ଯିବା ପାଇଁ ପଦକ୍ଷେପ ନିଆଯାଇଥାଏ ।

ହାତବୁଣା ଖଦି ଆଗରୁ କର୍ଣ୍ଣାଟକର ଏକ ଛୋଟଗ୍ରାମ ଗରାଗରୁ ଏହା ପ୍ରସ୍ତୁତ ହେଉଥିଲା । ୧୯୫୪ ମସିହାରେ ଗରାଗଠାରେ କେତେକ ସ୍ୱାଧୀନତା ସଂଗ୍ରାମୀ ଧରୱାର୍ଡ ତାଲୁକ କ୍ଷତ୍ରିୟ ସେବା ସଂଘ ଆନୁକୂଲ୍ୟରେ କେନ୍ଦ୍ରରୁ ଅନୁମତି ପତ୍ର ଆଣି ପତାକା ପ୍ରସ୍ତୁତ କରୁଥିଲେ । ଏହା ଆଜିକାଲି ବନ୍ଦ ହୋଇଯାଇଛି । ଆଜିକାଲି ଖଦିର ବୁଣାତ୍ମକ ମାନ ଦେଖିବା ପରେ କାରଖାନାକୁ ପଠାଯାଏ । ଏହାକୁ ତିନିଭାଗରେ ବିଭକ୍ତ କରାଯାଏ ଓ ପ୍ରତ୍ୟେକ ବଣ୍ଡଲ ରଙ୍ଗ କରାଯାଏ । ଯଥା– କମଳା ରଙ୍ଗ, ଧଳାରଙ୍ଗ ଓ ସବୁଜ ରଙ୍ଗ । ତା'ପରେ ଧଳାରଙ୍ଗ କପଡ଼ା ଉପରେ ଅଶୋକ ଚକ୍ରର ସ୍କ୍ରିନ୍ ପ୍ରିଟିଙ୍ଗ୍ କରାଯାଏ । ପୁଣି ଷ୍ଟେନସିଲ କରାଯାଏ ବା ହାତରେ ଛୁଞ୍ଚିକାମ କରାଯାଏ । ଦେଖାଯାଏ, ଯେପରି ଏହା ଉଭୟ ପଟକୁ ସମାନ ଭାବରେ ଦେଖାଯିବ । ତେଣୁ ପତାକା ତିଆରି ପାଇଁ କପଡ଼ା, ସୂତା ଓ ରଙ୍ଗମାନ ନିୟନ୍ତ୍ରଣରେ ରଖାଯାଏ । ତିଆରି ପରେ ବ୍ୟୁରୋ ଅଫ ଇଣ୍ଡିଆର ଷ୍ଟାଣ୍ଡାର୍ଡ ସରକାରୀ ସଂସ୍ଥା ଦ୍ୱାରା ଯାଞ୍ଚ ହେଲାପରେ ବଜାରକୁ ପଠାଯାଏ ।

ଏହି ୭୦ତମ ସ୍ୱାଧୀନତା ଦିବସରେ ୨ ମାସ ପୂର୍ବରୁ ଜାତୀୟ ପତାକାର ବ୍ୟବହାର ୯୦ ଲକ୍ଷରେ ପହଞ୍ଚିଥିଲା । ଗତବର୍ଷ ଏହାର ବିକ୍ରି ୧.୫ କୋଟି ଥିଲା । ସାଧାରଣତଃ ବହୁତ ଶିକ୍ଷାନୁଷ୍ଠାନ ଏହାକୁ ନେଇଥା'ନ୍ତି । ନିକଟ ଅତୀତରେ ସରକାରୀ ନିର୍ଦ୍ଦେଶନାମା ଅନୁଯାୟୀ ଦେଶର ପ୍ରତ୍ୟେକ ପଞ୍ଚାୟତ ୩ଖଣ୍ଡ ଲେଖାଏଁ ଜାତୀୟ

ପତାକା କିଣିଥିଲେ । ଜାତୀୟ ପତାକାର ବ୍ୟବହାର ଓ ବିକ୍ରି ସରକାରୀ ପ୍ରୋତ୍ସାହନ ଉପରେ ନିର୍ଭର କରେ । ଆଜିକାଲି ଜାତୀୟ ପତାକାର ପ୍ରସ୍ତୁତିପ୍ରଣାଳୀ ଅଲ ଇଣ୍ଡିଆ ଖଦି ଗ୍ରାମଦ୍ୟୋଗ ବିଦ୍ୟାଳୟରେ ପଢ଼ାଯାଇଥାଏ ।

ଆମ ଜାତୀୟ ପତାକାର ଲମ୍ବ ଓ ପ୍ରସ୍ଥ ପାଇଁ ୯ ପ୍ରକାରର ମାନ ନିର୍ଦ୍ଧାରଣ କରାଯାଇଛି ।

୧. ଲମ୍ବ ୬୩୦ ଓ ପ୍ରସ୍ଥ ୪୨୦ ସେଣ୍ଟିମିଟର
୨. ଲମ୍ବ ୩୬୦ ଓ ପ୍ରସ୍ଥ ୨୪୦ ସେଣ୍ଟିମିଟର
୩. ଲମ୍ବ ୨୭୦ ଓ ପ୍ରସ୍ଥ ୧୮୦ ସେଣ୍ଟିମିଟର
୪. ଲମ୍ବ ୧୮୦ ଓ ପ୍ରସ୍ଥ ୧୨୦ ସେଣ୍ଟିମିଟର
୫. ଲମ୍ବ ୧୩୪ ଓ ପ୍ରସ୍ଥ ୯୦ ସେଣ୍ଟିମିଟର
୬. ଲମ୍ବ ୯୦ ଓ ପ୍ରସ୍ଥ ୬୦ ସେଣ୍ଟିମିଟର
୭. ଲମ୍ବ ୪୫ ଓ ପ୍ରସ୍ଥ ୩୦ ସେଣ୍ଟିମିଟର
୮. ଲମ୍ବ ୨୨୫ ଓ ପ୍ରସ୍ଥ ୧୫୦ ସେଣ୍ଟିମିଟର
୯. ଲମ୍ବ ୧୫୦ ଓ ପ୍ରସ୍ଥ ୧୦୦ ସେଣ୍ଟିମିଟର

ଆମର ନାଗରିକମାନେ ଯେକୌଣସି ସଂସ୍ଥା ଓ ଯେକୌଣସି ପ୍ରକାରର ପତାକା ବ୍ୟବହାର କରିବା ଉଚିତ ନୁହେଁ । ଏହା ଜାତୀୟ ପତାକାକୁ ଅମର୍ଯ୍ୟାଦା ବୋଲି ଭାବିବାକୁ ହେବ । ଖେଳମାନଙ୍କରେ ବିଜୟ ହାସଲ କଲେ କିମ୍ବା ଯୁଦ୍ଧରେ ଜୟଲାଭ କଲେ ଏହି ତ୍ରିରଙ୍ଗା ଉଡ଼ାଇ ଆମେ ଗର୍ବ କରୁ ଓ 'ଝଣ୍ଡା ଉଚ୍ଚା ରହେ ହମାରା' ବୋଲି ସ୍ଲୋଗାନ ଦେଉ । ଏହା ଆମ ଦେଶର ଧର୍ମ, ଜାତି ଓ ବର୍ଣ୍ଣର ଊର୍ଦ୍ଧ୍ୱରେ । ଏହା ଆମର ଗର୍ବ ଓ ସ୍ୱାଭିମାନର ପ୍ରତୀକ ।

*ଅରୁଣୋଦୟ ନଗର, କଟକ-୧୨*






ଶ୍ରୀ ପ୍ରଦୀପ କୁମାର ଦାଶ

୧ । ପ୍ରଧାନମନ୍ତ୍ରୀଙ୍କୁ କିଏ ଶପଥ ପାଠ କରାନ୍ତି ?

୨ । କାହାଙ୍କୁ ଜ୍ୟାମିତିର ଜନକ ବୋଲି କୁହାଯାଏ ?

୩ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା କିଏ ?

୪ । କିଏ 'ଭାରତ ଆବିଷ୍କାର' ପୁସ୍ତକ ରଚନା କରିଥିଲେ ?

୫ । 'ରଙ୍ଗବତୀ' ଗୀତର ଗାୟକ ଗାୟିକାଙ୍କ ନାମ କ'ଣ ?

୬ । ବଲାଙ୍ଗିର ଜିଲ୍ଲା କେବେ ଗଠିତ ହୋଇଥିଲା ?

୭ । ଓଡ଼ିଆ ଭାଷାକୁ କେବେ ଶାସ୍ତ୍ରୀୟ ମାନ୍ୟତା ମିଳିଥିଲା ?

୮ । 'ଜ୍ଞାନମଣ୍ଡଳ'ର ସଂକଳକ କିଏ ?

୯ । ସ୍ୱାଧୀନ ଭାରତର ପ୍ରଥମ ଆଇନମନ୍ତ୍ରୀ କିଏ ଥିଲେ ?

୧୦ । ଭାରତର ପ୍ରଥମ ଉପରାଷ୍ଟ୍ରପତିଙ୍କ ନାମ କ'ଣ ?

୧୧ । ରାକ୍ଷୀ ପୂର୍ଣ୍ଣମୀ ଦିନ କେଉଁ ଦେବତାଙ୍କୁ ପୂଜା କରାଯାଏ ?

୧୨ । କେଉଁ ବେଦକୁ ଗାନ କରାଯାଏ ?

*ହରିଶଙ୍କର ରୋଡ, ବଲାଙ୍ଗିର-୭୬୭୦୩୮*

*(ଉତ୍ତର ୪୪ ପୃଷ୍ଠାରେ)*



# ରାଜାଙ୍କ ରାଜା

ଶ୍ରୀ ସୁଧାଂଶୁ ଦ୍ୱିବେଦୀ

ଚୀନ୍‌ର ମହାନ୍ ଦାର୍ଶନିକ କନ୍‌ଫୁସିୟସ୍ ଦିନେ ଏକାନ୍ତରେ ବସି ଚିନ୍ତାମଗ୍ନ ଥା'ନ୍ତି । ସେତିକିବେଳେ ଚୀନ୍ ଦେଶର ସମ୍ରାଟ୍ (ରାଜା) ସେହି ରାସ୍ତା ଦେଇ ଯାଉଥାନ୍ତି । ନିଜ ଭାବନାରେ ଏତେ ମଜ୍ଜି ଯାଇଥାନ୍ତି ଯେ ରାସ୍ତାରେ କିଏ ଗଲା ନ ଗଲା, ସେଥିପ୍ରତି ତାଙ୍କର ଆଦୌ ଧ୍ୟାନ ନଥାଏ ।

କନ୍‌ଫୁସିୟସ୍‌ଙ୍କର ଏଭଳି ସ୍ୱଭାବ ଦେଖି ରାଜାଙ୍କୁ ଖୁବ୍ ଅପମାନ ବୋଧ ହେଲା । କାରଣ ରାଜା କି ମନ୍ତ୍ରୀ ତଥା ରାଜପରିବାରର କୌଣସି ସଦସ୍ୟ ଯେଉଁ ରାସ୍ତା ଦେଇ ଯାଆନ୍ତି, ପ୍ରଜାମାନେ ଦେଖିବାମାତ୍ରେ ନତମସ୍ତକ ହୋଇ ସମ୍ମାନ ଜଣେଇଥାନ୍ତି । ଜଣେ ପ୍ରଜାର ଏଭଳି ବ୍ୟତିକ୍ରମ ଦେଖି ରାଜା ବା ସହନ୍ତେ କିପରି? ସହସା ଘୋଡ଼ାରୁ ଓହ୍ଲେଇ ରାଗ ଗରଗର ହୋଇ କନ୍‌ଫୁସିୟସ୍‌ଙ୍କ ପାଖରେ ପହଞ୍ଚି ପଚାରିଲେ, "ତୁମେ କିଏ ? ତୁମର ଏତେ ସାହସ ହେଲା କିପରି ?" ହଠାତ୍ ବଜ୍ରଗମ୍ଭୀର ସ୍ୱର ଶୁଣି କନଫୁସିୟସ୍ ନିଜ ଭାବନାରୁ ବିରତ ହୋଇ ସହଜ ଭାଷାରେ କହିଲେ, "ଆଜ୍ଞା ! ମୁଁ ରାଜା ।" ଏଭଳି ଉତ୍ତର ଶୁଣିବାମାତ୍ରେ ରାଜା ଆହୁରି ରାଗରେ କଂପି ଉଠିଲେ ଓ ଆଶ୍ଚର୍ଯ୍ୟ ହୋଇ ପୁଣି ପଚାରିଲେ, "ଏ ଦେଶର ରାଜା ତ ମୁଁ । ମୋ ପାଖେ ସୈନ୍ୟସାମନ୍ତ, ସେବକ, ଧନସମ୍ପତ୍ତି, ମାନସମ୍ମାନ ସବୁ କିଛି ଅଛି । ଏ ସବୁ ତ ତୁମ ପାଖରେ କିଛି ହେଲେ ନାହିଁ । ଏପରିକି ରହିବା ପାଇଁ ଭଲ ଘରଟିଏ ବି ନାହିଁ । ଏ ସବୁ ପରେ ତୁମେ ରାଜା ହେଲ କିପରି ?"

ରାଜାଙ୍କ ଉତ୍ତେଜିତ କଥାରେ କନଫୁସିୟସ୍ ନମ୍ର ଭାବରେ କହିଲେ, "ସୈନ୍ୟ ତାଙ୍କୁ ହିଁ ଦରକାର, ଯାହାର ଶତ୍ରୁ ଅଛନ୍ତି; ହେଲେ ମୋର ତ କେହି ଶତ୍ରୁ ନାହାନ୍ତି । ତା'ଛଡ଼ା ସେବକ, ଚାକର ତାଙ୍କୁ ହିଁ ଆବଶ୍ୟକ, ଯିଏ ଅଳସୁଆ, ନିଜ କାମ ନିଜେ କରିବାକୁ ବଳ ନ ଥାଏ । ଅର୍ଥାତ୍ ମୁଁ କାମଚୋର ନୁହେଁ କି ଶକ୍ତିହୀନ ନୁହେଁ । ନିଜ କାମ ନିଜେ କରିବାରେ ସମ୍ପୂର୍ଣ୍ଣ କ୍ଷମ । ଆଉ ଧନ-ସମ୍ପତ୍ତି ସେହିମାନଙ୍କୁ ହିଁ ଆବଶ୍ୟକ, ଯିଏ ଏ ସଂସାରରେ ସବୁଠୁ ବେଶୀ ଦରିଦ୍ର । ହେଲେ ମୋ ପାଖରେ ସୁଖ, ଶାନ୍ତି, ଆନନ୍ଦ, ଉଲ୍ଲାସ ସବୁ କିଛି ଅଛି । ଅଯଥା ସୁନା, ରୁପା, ଧନସମ୍ପତ୍ତି ମୋ ପାଇଁ ବ୍ୟର୍ଥ, ଅନାବଶ୍ୟକ । ଏବେ ଆପଣ କୁହନ୍ତୁ, ରାଜା ମୁଁ ନା ଆପଣ ?"

କନ୍‌ଫୁସିୟସ୍‌ଙ୍କର ଏଭଳି ମର୍ମସ୍ପର୍ଶୀ କଥାରେ ରାଜାଙ୍କ ହୃଦୟ ସହସା ପରିବର୍ତ୍ତିତ ହୋଇଗଲା । ସେ ସଙ୍ଗେ ସଙ୍ଗେ ସନ୍ଥଙ୍କୁ ଚିହ୍ନିପାରି ତାଙ୍କ ଚରଣ ତଳେ ଲୋଟିଗଲେ ଓ ନିଜର ଭୁଲ୍ ପାଇଁ କ୍ଷମା ମାଗିଲେ ।

ପ୍ରକୃତରେ ସବୁଠାରୁ ବଡ଼ ସମ୍ପତ୍ତି ହେଲା ସୁଖ, ଶାନ୍ତି ଓ ଆନନ୍ଦ; ହେଲେ ଆଜିକାଲି ତାହାର ବିପରୀତ ହେଉଛି । ଧନ ରୋଜଗାର କରିବା ମୋହରେ ସଭିଏଁ ଘୋଡ଼ା ଭଳି ଦୌଡ଼ୁଛନ୍ତି । ଫଳସ୍ୱରୂପ ନା ଠିକ୍ ସମୟରେ ଖାଇ ହେଉଛି ନା ଠିକ୍ ସମୟରେ ଶୋଇ ହେଉଛି ନା ଉଚିତ୍ କାମ ଠିକ୍ ସମୟରେ କରିହେଉଛି, ଯାହା ଫଳରେ ମନରେ ଅଶାନ୍ତି, ଦୁଃଖ, ଅବସାଦ ବଢ଼ିଯାଉଛି ।

ସେଥିପାଇଁ ସନ୍ଥ-ମହାତ୍ମାମାନେ କହିଛନ୍ତି, "ଯେଉଁ ସୁଖ, ଶାନ୍ତି, ଆନନ୍ଦ ତୁମେମାନେ ଖୋଜୁଛ, ତାହା ସବୁ ସମୟରେ ତୁମରି ଭିତରେ ଅଛି । ଜ୍ଞାନ, ଭକ୍ତି, କର୍ମ ଓ ଯୋଗଦ୍ୱାରା ତାହା ଅନ୍ତର୍ମୁଖୀ ହୋଇଥାଏ । ଯେଉଁଥିପାଇଁ ଭଗବାନଙ୍କ ପ୍ରତି ସମର୍ପଣର ଭାବ ଉଦ୍ରେକ ହୋଇଥାଏ । ଆଉ ଯାହାଦ୍ୱାରା ଅଚିରେ ସୁଖ, ଶାନ୍ତି, ଆନନ୍ଦ ପ୍ରାପ୍ତି ହୁଏ ।

*ବିସି- ୭୪, ସେକ୍ଟର୍-୧, ସଲଟ୍ ଲେକ୍, କଲିକତା- ୬୪*

# ଟିକି ଚଢ଼େଇର କମାଲ୍

## ଶ୍ରୀ ଚିକୁନ୍ ପଣ୍ଡା

ବହୁତ ଦିନ ତଳର ଘଟଣା । ଗୋଟିଏ ଘଞ୍ଚ ଜଙ୍ଗଲରେ ସୈତାନ୍‌ଟିଏ ବାସ କରୁଥିଲା । ସେଥିପାଇଁ ଜଙ୍ଗଲ ନିକଟରେ ଥିବା ଗ୍ରାମବାସୀ ସେଠାକୁ କେହି ବି ଯା'ନ୍ତି ନାହିଁ । ସେହି ଗାଁରେ ଗୋଟିଏ ପାଗଳ ବ୍ୟକ୍ତି ଥିଲା । ହଠାତ୍ ଦିନେ ସେ ସମସ୍ତଙ୍କ ଅଗୋଚରରେ ଜଙ୍ଗଲ ମଧ୍ୟକୁ ପଳାଇଗଲା । ଚାହୁଁ ଚାହୁଁ ଗାଁ'ରେ ଚହଳ ପଡ଼ିଗଲା– ଗୋଟେ ପାଗଳ ଜଙ୍ଗଲ ଭିତରକୁ ପଶି ଯାଇଛି ।

ଜଙ୍ଗଲ ଭିତରକୁ ପାଗଳଟି ପଳାଇଲା ସିନା ଆଉ ଫେରିବାକୁ ବାଟ ପାଇଲା ନାହିଁ । ଜଙ୍ଗଲ ଭିତରେ ନିଜକୁ ଏକାକୀ ପାଇ ପାଗଳଟି କାନ୍ଦିବାକୁ ଆରମ୍ଭ କଲା । ସେଇ ଜଙ୍ଗଲ ଭିତରେ ଥିଲା ଗୋଟିଏ ମିଠା ବରକୋଳି ଗଛ । ସେଇ ଗଛରେ ବସା ବାନ୍ଧିଥିଲା ବାଇଚଢ଼େଇ । ସେଇ ବରକୋଳି ଗଛ ମୂଳେ ଯାଇ ପାଗଳଟି ବସି ପଡ଼ିଲା । ଭୋକ ବିକଳରେ ପାଗଳଟି କାନ୍ଦିବାକୁ ଆରମ୍ଭ କଲା । ପାଗଳଟିର କାନ୍ଦ ବାଇଚଢ଼େଇ କାନ ପାଖରେ ଯାଇ ପହଞ୍ଚିଲା । ବାଇଚଢ଼େଇ ତା' ବସାରୁ ବାହାରି ଦେଖିଲା ପାଗଳଟିଏ ବରକୋଳି ଗଛ ମୂଳରେ ବସି ରହିଛି ଆଉ ଭୋକ ବିକଳରେ ଆଖିରୁ ଲୁହ ଝରାଉଛି ।

ଏହା ଦେଖି ବାଇଚଢ଼େଇଟି ପାଗଳଟିକୁ କହିଲା– ଏହି ମିଠା ବରକୋଳିଗୁଡ଼ିକ ନିଅ । ଖାଇ କି ନିଜର ଭୋକ ମେଣ୍ଟାଅ । ପାଗଳଟି ପେଟପୂରା ମିଠା ବରକୋଳି ଖାଇ ତା ଆଖିକୁ ନିଦ ଆସିଗଲା । ଧୀରେ ଧୀରେ ରାତି ହୋଇଗଲା । ରାତି ହେଲେ ଜଙ୍ଗଲରେ ଯଦି କାହାର ରାଜ୍ ଚାଲେ, ସେ ହେଉଛି ସୈତାନ୍ । ସୈତାନ୍‌ର ହସରେ ଜଙ୍ଗଲ ପ୍ରକମ୍ପିତ ହୋଇଉଠେ । ସୈତାନ୍‌କୁ ବହୁତ ଭୋକ କରୁଥିଲା । ସେ ଜଙ୍ଗଲରେ ବୁଲି ବୁଲି ଫଳ ତୋଳି ଖାଇବାରେ ଲାଗିଲା ।

ଶେଷରେ ସେ ମିଠା ବରକୋଳି ଗଛ ନିକଟରେ ପହଞ୍ଚିଲା । ଦେଖିଲା ରକ୍ତମାଂସଧାରୀ ମଣିଷଟିଏ ଶୋଇଛି । ବହୁତ ଦିନ ହେଲା ସୈତାନ୍ ପାଟିରେ ମଣିଷ ରକ୍ତ ବାଜି ନ ଥିଲା । ସେ ପାଖରେ ମଣିଷଟିଏ ପାଇ ବହୁତ ଖୁସି ହୋଇଗଲା । ପାଗଳଟି ମଧ୍ୟ ଡଉଲଡାଉଲ ଚେହେରାର ଅଧିକାରୀ ଥିଲା । ପାଗଳକୁ ଦେଖି ସୈତାନ୍ ଆଉ ତା'ର ଲୋଭ ସମ୍ବରଣ କରିପାରିଲା ନାହିଁ ।

ତାକୁ ଖାଇବା ପାଇଁ ବାହାରିବା ବେଳେ ହଠାତ୍ ବାଇଚଢ଼େଇ ତା'ର ବସାରୁ ବାହାରିଆସି ପାଗଳଟିକୁ ନ ଖାଇବା ପାଇଁ ଅନୁରୋଧ କଲା । ସୈତାନ୍‌ର ରାଗ ଆହୁରି ବଢ଼ିଗଲା । କାରଣ ସେ ଭାବିଲା ସାମାନ୍ୟ ଟିକି ଚଢ଼େଇଟିଏ ତାକୁ ଆଦେଶ ଦେଉଛି ! ଏହି ସମୟରେ ବାଇଚଢ଼େଇର ମୁଣ୍ଡକୁ ଗୋଟିଏ ଚମତ୍କାର ବୁଦ୍ଧିଟିଏ ଆସିଲା । ସେ ସୈତାନ୍‌କୁ କହିଲା, "ମହାରାଜ ! ଆପଣ ଏହି ଛାର୍ ପାଗଳଟିକୁ ଖାଆନ୍ତୁ ନାହିଁ । । ଏଇଟା ଆପଣଙ୍କ



ବିରୋଧରେ ଗୋଟିଏ ଚାଲ୍ । ମୁଁ କିଛି ଦିନ ପୂର୍ବେ ଜଙ୍ଗଲ ପାଖ ଗାଁ'କୁ ବୁଲିଯାଇଥିଲି ଯେ ଦୁଇଜଣ ବ୍ୟକ୍ତି କଥା ହେଉଥିଲେ ଜଙ୍ଗଲରେ ଥିବା ସୈତାନ୍‌ର ଆୟୁଷ ବେଶି ଦିନ ନୁହେଁ । ମୁଁ ଭାବୁଛି ଗ୍ରାମବାସୀମାନେ ଜାଣିଶୁଣି ଏହି ପାଗଳକୁ ଏହି ଜଙ୍ଗଲକୁ ପଠାଇଛନ୍ତି; ଯାହାକୁ ଖାଇଲେ ଆପଣଙ୍କ ଜୀବନ ବିପଦରେ ପଡ଼ିବ ।" ବାଇ-ଚଢ଼େଇଠାରୁ ଏସବୁ କଥା ଶୁଣି ସୈତାନ୍ ମନରେ ଛନକା ପଶିଗଲା । ବାଇଚଢ଼େଇ ପୁଣି ସୈତାନ୍‌କୁ କହିଲା– "ମହାରାଜ ! ଆପଣ ହେଉଛନ୍ତି ମୋ ପାଇଁ ଅତିଥି । ମୁଁ ଛାର ପକ୍ଷୀଟିଏ ଆପଣଙ୍କୁ କ'ଣ ବା ଦେଇପାରିବି ? ଆପଣ ଯଦି କିଛି ନ ଭାବନ୍ତି, ମୁଁ ଜଙ୍ଗଲରୁ କିଛି ଫଳମୂଳ ସଂଗ୍ରହ କରି ଆଣିବି ।"

ସୈତାନ୍ ତ ଭୋକରେ ଆଉଟୁପାଉଟୁ ହେଉଥିଲା । ସେ ଆନନ୍ଦିତ ହୋଇଗଲା । ବାଇଚଢ଼େଇ ଜାଣିଥିଲା ଜଙ୍ଗଲରେ ଏମିତି ଅନେକ ବିଷଫଳ ଅଛି, ଯାହାକୁ ଖାଇଲେ ଜୀବନ ବିପନ୍ନ ହେବ । ସେ ଜାଣିଶୁଣି ଜଙ୍ଗଲରୁ ବିଷଫଳ ସଂଗ୍ରହ କରି ଆଣି ସୈତାନ୍‌କୁ ଖାଇବାକୁ ଦେଲା । ଫଳ ଖାଇଲା ପରେ ସୈତାନ୍‌ର ମୁଣ୍ଡ ଘୂରାଇବା ଆରମ୍ଭ କଲା । କିଛି ସମୟ ଛଟ୍‌ପଟ୍ ହେବା ପରେ ସୈତାନ୍‌ର ପ୍ରାଣବାୟୁ ଉଡ଼ିଗଲା ।

ପକ୍ଷୀଟି ଗାଁକୁ ଯାଇ ଏ ଖବର ସବୁଆଡ଼େ ଦେଇ ଆସିଲା । ଗ୍ରାମବାସୀଙ୍କର ମନରେ ଥିବା ସବୁ ଭୟ ହଟିଗଲା । ସେମାନେ ଆଶ୍ୱସ୍ତ ହେଲେ; ଆଉ ଜଙ୍ଗଲକୁ ଯାଇ ପାଗଳଟିକୁ ଆଣି ତା' ଘରେ ଛାଡ଼ିଦେଲେ । ସୈତାନ୍‌ର ମରିବା ଖୁସିରେ ଆତ୍ମହରା ହୋଇ ଗ୍ରାମବାସୀମାନେ ଏକ ବିରାଟ ଭୋଜିର ଆୟୋଜନ କଲେ ଓ ସେଥିରେ ବାଇଚଢ଼େଇକୁ ଡକାଯାଇଥିଲା । ବାଇଚଢ଼େଇ ଖାଇପିଇ ପୁଣି ଥରେ ତା' ବସାକୁ ଫେରିଗଲା । **(ଲୋକକଥା)**

*ଖପୁରିଆ, ନେତାଜୀନଗର, ମଧୁପାଟଣା, କଟକ-୧୦*



# ମଜା ପାଠରୁ ଖୁସି ବାଣ୍ଟିବା

ଶ୍ରୀ ରାସେଶ୍ୱର ମହାନ୍ତ

ଇଭା ଆଉ ଈଶା ଦୁଇ ସାଙ୍ଗ । ବାପା ମା' ଅଲଗା ହେଲେ କ'ଣ ହେଲା; ମନେହୁଏ ସତେକି ଗୋଟିଏ ମାଆ ପେଟର ଦୁଇ ଭଉଣୀ । ଦୁହିଁଙ୍କର ବାପା ଗୋଟିଏ କମ୍ପାନୀରେ ଚାକିରି କରୁଥିଲେ । ଖାଲି ବାଲ୍ୟକାଳ ନୁହେଁ, ପ୍ରାଥମିକ ଶିକ୍ଷା ମଧ୍ୟ ଏକାଠି ଶେଷ କରିଛନ୍ତି । ବାପାଙ୍କ ବଦଳି ଯୋଗୁ ଈଶା ଭୁବନେଶ୍ୱର ଚାଲିଗଲା ଆଉ ଇଭା ରହିଲା ଏଇ ଛୋଟ ସହର ଚମ୍ପୁଆରେ । ଈଶା ବର୍ତ୍ତମାନ ସେଣ୍ଟ ଜାଭିୟର୍ସ ସ୍କୁଲର ୯ମ ଶ୍ରେଣୀରେ ଇଂରାଜୀ ମାଧ୍ୟମ ସ୍କୁଲରେ ଆଉ ଇଭା ଚମ୍ପୁଆ ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାନୁଷ୍ଠାନର ଅଷ୍ଟମ ଶ୍ରେଣୀ ଛାତ୍ରୀ ।

ଟେଲିଫୋନରେ ତ ଦିନେ କଥା ନ ହେଲେ ତାଙ୍କୁ ଭଲ ଲାଗେ ନାହିଁ । ମାତ୍ର ସାକ୍ଷାତ ହୁଏ ଦୁର୍ଗାପୂଜା, ବଡ଼ଦିନ ଆଦି ଲମ୍ବା ଛୁଟିଦିନମାନଙ୍କରେ । ଥରେ ପୂଜାଛୁଟିରେ ଈଶା ଆସିଥିଲା ଚମ୍ପୁଆ । ସେ ଦିନର ସେ ଭାବପୂର୍ଣ୍ଣ ମିଳନ ଯିଏ ଦେଖିଛି, ଆଖିରୁ ଆନନ୍ଦାଶ୍ରୁ ଝରାଇଛି ।

ଘରେ ପହଞ୍ଚିବାର ଅଳ୍ପ ସମୟ ପରେ ଜଳ ଯୋଗ ସାରି ଦୁଇସାଙ୍ଗ ଉଠିଗଲେ ଛାତ ଉପରକୁ ଆଉ ମେଲି ଦେଇଗଲେ ପରସ୍ପରର ଅପାସୋରା କଥା ସାଙ୍ଗକୁ ପାଠର ବିଭିନ୍ନ ମଜାଳିଆ କଥା । ଆଲୋଚନା କରୁକରୁ ସେମାନେ ଆସି ପହଞ୍ଚିଗଲେ କୌତୁକ ସଂଖ୍ୟା ପ୍ରସଙ୍ଗରେ ।

ଈଶା ଆରମ୍ଭ କଲା- ଇଭା ! ଏମିତି କିଛି ଇଂରାଜୀ ଶବ୍ଦ କହିଲୁ ଯେଉଁଠି a, b କିମ୍ବା c ଅକ୍ଷର ଲାଗି ନଥିବ ।

ଇଭା- ହଁ, ଜାଣିଛି- Sun, moon, dry, dog, god, good, tree, foot, king, queen, morning, evening........

ଈଶା- ଅନ୍ତତଃ ପାଞ୍ଚମିନିଟ୍ ସମୟ ଭିତରେ କେତେ ଲେଖିପାରିବୁ ? ଇଭା- କୋଡ଼ିଏଟା ।

ଈଶା- ଦଶମିନିଟ୍‌ରେ, ପନ୍ଦର ମିନିଟ୍‌ରେ, ଅଧଘଣ୍ଟାରେ ?

ଇଭା- ପଚାଶଟା ଯାଏ ଲେଖିପାରିବି । ଅଧିକ ସମୟ ହେଲେ ଚିନ୍ତା କରି ଶହେଟା ଯାଏ ପାରିବି ।

ଈଶା- ମାତ୍ର ଏତିକି ?

ଇଭା- (ଆଶ୍ଚର୍ଯ୍ୟ ହୋଇ) ଆଉ ତୁ କ'ଣ ବେଶି ପାରିବୁ ?

ଈଶା- ମୁଁ ନୁହେଁ, ଆମେ ସମସ୍ତେ ଜାଣିଛେ, ମାତ୍ର ସେ କୌତୁକିଆ କଥାଟା ପ୍ରତି ଆମର ଧ୍ୟାନ ନାହିଁ । ଇଭା- କେମିତି ?

ଈଶା- ଶୁଣ ! ୦ ରୁ ୯୯୯ ପର୍ଯ୍ୟନ୍ତ ସଂଖ୍ୟାଗୁଡ଼ିକୁ ଇଂରାଜୀରେ ଲେଖିଲେ କୌଣସିଠାରେ a, b କିମ୍ବା c ଅକ୍ଷରର ବ୍ୟବହୃତ ହୋଇନାହିଁ । ତୁ ନିଜେ ଲେଖି ଦେଖୁନୁ ।

ଇଭା- Zero, one, two, three, four, five, six........ ଆରେ ହଁ ତ..... !

ଈଶା- ଏମିତି ଲେଖି ଚାଲିଲେ one thousand (1000) ବେଳକୁ ଯାଇଁ 'a' ଅକ୍ଷର ଆସିବ । ଇଭା- ସତେତ ! ଏତେ ମଜାକଥା !

ଈଶା- ଏମିତି ଅନେକ କଥା ଆମର ଅବଚେତନ ମନ ତଳେ ରହିଯାଇଛି; ଯାହାକୁ ଆମେ ଖିଆଲି ମନରେ ଭାବି ନଥାଉ । ମାତ୍ର ଯେତେବେଳେ ସେ ବିଷୟରେ ଚିନ୍ତା କରୁ ଆମକୁ ମଜା ଲାଗେ, ଆଶ୍ଚର୍ଯ୍ୟ ବି ଲାଗେ ।

ଇଭା- ଆଚ୍ଛା, ଏମିତି ଆଉ କିଛି କୌତୁକିଆ କଥା ଜାଣିଛୁ କି ମୋତେ କହିବୁ ? ଭାରି ଭଲ ଲାଗୁଛି ।

ଈଶା- ହଁ, ଶୁଣ ! ଆଉ ଗୋଟିଏ ମଜାଳିଆ କଥା– ଶହେ ଠାରୁ କମ୍ ଯେତେ ସଂଖ୍ୟା ଅଛି, ସେଗୁଡ଼ିକୁ ଇଂରାଜୀ ଅକ୍ଷରରେ ଲେଖିଲେ ଅନେକ ସଂଖ୍ୟାରେ ଇଂରାଜୀର କୌଣସି ନା କୌଣସି ଅକ୍ଷର ଏକାଧିକଥର ବ୍ୟବହୃତ ହୋଇଥାଏ । ଆଉ ଅଳ୍ପକିଛି ସଂଖ୍ୟାରେ ଏପରି ହୁଏ ନାହିଁ । Elevenରେ e, twentyରେ t, fiftyରେ f, ninety ରେ n; ମାତ୍ର ଏହା ମଧ୍ୟରେ 84 (eighty four) ସବୁଠାରୁ ବଡ଼ ସଂଖ୍ୟା, ଯାହାକୁ ଇଂରାଜୀ ଅକ୍ଷରରେ ଲେଖିଲେ ପ୍ରତି ଅକ୍ଷର ଥରେ ମାତ୍ର ବ୍ୟବହୃତ ହୋଇଛି । 84 ପରେ ସମସ୍ତ ସଂଖ୍ୟାକୁ ଲେଖିଲେ ଆଉ ଏପରି ବୈଚିତ୍ର୍ୟ ନାହିଁ । ହଁ, ଏହାର ପରବର୍ତ୍ତୀ ସଂଖ୍ୟା ଯେଉଁଠି ଏମିତି ଗୁଣ ରହିଛି, ତାହା 5000 (Five thousand) ।

ଇଭା- ଆରେ ବାପରେ ! ଏତେ ଗୂଢ଼ କଥା ସଂଖ୍ୟାରେ ପୁଣି ରହିଛି । ମୁଁ କ'ଣ, ଆମ ସ୍କୁଲର କେହି ଏ ଅଦ୍ଭୁତ କଥା ଜାଣିଥିବେ କି ନା ସନ୍ଦେହ । ଇଭାର ମନ୍ତବ୍ୟ ଶୁଣି ଈଶା ବି ଖୁସି ହୋଇଗଲା ।

ଈଶା- (ହସିଉଠି) ଇଭା ! ଜାଣିଛୁ ? ଆମର ଏଇ ସଂଖ୍ୟା ଜଗତରେ ଏମିତି ଗୋଟିଏ କୌତୁକିଆ ସଂଖ୍ୟା ଅଛି '40' । ଏହାର ମଜାଗୁଣଟି ହେଲା- ଏ ସଂଖ୍ୟାକୁ ଇଂରାଜୀରେ ଲେଖିଲେ ଇଂରାଜୀ ବର୍ଣ୍ଣମାଳାର ଅକ୍ଷର କ୍ରମରେ ରହେ ।

ଇଭା- କ'ଣ କହିଲୁ ବୁଝିପାରିଲି ନାହିଁ । ଟିକେ ବୁଝେଇ କହ ପ୍ଲିଜ୍ ।

ଈଶା- ଇଂରାଜୀ ବର୍ଣ୍ଣମାଳାର ଅକ୍ଷର କ୍ରମ ହେଉଛି- A, B, C........ Z । ଅନ୍ୟ ସଂଖ୍ୟା ସବୁ ଇଂରାଜୀ ଅକ୍ଷରରେ ଲେଖିଲେ A ରୁ Z ହିସାବରେ ପଛକୁ ପଛ ନ ଆସି



# ନଈପଠା

ଶ୍ରୀ ସୁକାନ୍ତ କୁମାର ସେଠୀ

ଗୁମୁରି କାନ୍ଦେ    ଅଥୟ ନଈ
ସାଗର କଥା ଭାଳି
ଧୀର ସମୀର    ସଙ୍ଗରେ ପରା
ଲହରୀ ଯାଏ ଖେଳି ।
ପଠାରେ ତା'ର    କାଶତଣ୍ଡୀ ତ
ଘର ଯେ ଗଢ଼ିଦିଏ
କୁସୁମ ପେନ୍ଥି    ଅଧର ଖୋଲି
ମୁରୁକି ହସୁଥାଏ ।
କାକର ଲୁହ    ସୁଢ଼ଳ ଦିଶେ
କଅଁଳ ଦୂବ ଘାସେ
ରବି ହସିଲେ    କଞ୍ଚା ସକାଳ
କେତେ ସୁନ୍ଦର ଦିଶେ ।
ନଈପଠାରେ    ସୋରିଷ କ୍ଷେତ
ପିନ୍ଧେ ହଳଦୀ ପାଟ
ପ୍ରକୃତି ରାଣୀ    କାନ୍ତିକୁ ନେଇ
ବାନ୍ଧଇ ଶିରେ ଜଟ ।
ବଗବଗୁଲି    ଫେରିଆସିଲେ
ସଂଜ ଯେ ନଇଁ ଆସେ
ଶ୍ୱେତ କୁହୁଡ଼ି    ଓଢ଼ଣି ତଳେ
ପୂନେଇଁ ଜହ୍ନ ହସେ ।
ଜୋଛନା ଯେବେ    ନଈପଠାରେ
ଲହଡ଼ା ଭାଙ୍ଗି ଖେଳେ
ପିଲାଦିନର    ଅସରା ସ୍ମୃତି
ନଈପଠାକୁ ଝୁରେ ।

*କଇଥଖୋଲା, ଧାମରା, ଭଦ୍ରକ-୭୫୬୧୭୧*

---

ଆଗପଛ ହୁଏ; ମାତ୍ର 40କୁ ଲେଖିଲେ Z। ଏଇଠି F ପରେ O, ତା'ପରେ R, ତା'ପରେ T ଓ ଶେଷରେ Y ଆସୁଛି । ଏଠାରେ କ୍ରମ ବଦଳୁ ନାହିଁ। ପରୀକ୍ଷା କରି ଦେଖ୍ । ହଁ ଆଉ ଗୋଟିଏ କଥା, ଆମେ ୧ରୁ ୧୦୦ ପର୍ଯ୍ୟନ୍ତ ଓଡ଼ିଆ ଅକ୍ଷରରେ ଲେଖିଲେ ଶହେଟି ନୂଆ ଶବ୍ଦ ପାଇବା; ମାତ୍ର ଏହି ସଂଖ୍ୟାଗୁଡ଼ିକୁ ଇଂରାଜୀ ଅକ୍ଷରରେ ଲେଖିଲେ କ'ଣ ହୁଏ ଜାଣିଛୁ ?

ଇଭା– କ'ଣ ହୁଏ ?

ଈଶା– ୧ରୁ ୨୦ ପର୍ଯ୍ୟନ୍ତ One, two, three.... ...twenty ଇତ୍ୟାଦି କୋଡ଼ିଏଟି ନୂଆଶବ୍ଦ ପାଉ । ଏହା ଆଗକୁ ୨୧ ରୁ ୨୯ ଯାଏ ନୂଆଶବ୍ଦ ନାହିଁ। ତା'ପରେ Thirty, fourty, fifty, sixty, seventy, eighty, ninety, hundred ପ୍ରଭୃତି ନୂଆ ଶବ୍ଦ ମିଳେ। ଅର୍ଥାତ୍ One ରୁ One hundred ପର୍ଯ୍ୟନ୍ତ ମାତ୍ର ଅଠେଇଶଟି ଶବ୍ଦ ଜାଣିବାକୁ ହୁଏ ।

ଇଭା– ବୁଝିଲି । ତୁ ଇଂରାଜୀ ମାଧ୍ୟମ ସ୍କୁଲରେ ପଢୁଛୁ, ତେଣୁ ସଂଖ୍ୟାଗୁଡ଼ିକୁ ଇଂରାଜୀରେ ଲେଖିବାକୁ ଥିବା ମଜା କଥା ତୋ ସାଙ୍ଗମାନଙ୍କଠୁ ଜାଣିଛୁ ।

(ବାକି ଆର ଥରକୁ)

*ଶ୍ରୀ ଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାନୁଷ୍ଠାନ, ଚମ୍ପୁଆ, କେନ୍ଦୁଝର-୭୫୮୦୪୧*

# ବୁଦ୍ଧିମାନ ମୂଷାରାଜା

ଶାନ୍ତି ସାମଲ

ଥରେ ଜଙ୍ଗଲରେ ଗୋଟିଏ ବିଲୁଆ କିଛି ଖାଇବାକୁ ନ ପାଇ ଏଣେତେଣେ ବୁଲୁଥିଲା । ବୁଲିଲାବେଳେ ସେ ଗୋଟିଏ ବୁଦା ତଳେ ମୂଷାରାଜାଙ୍କୁ ଦେଖିଲା । ସେ ଭାବିଲା, ମୂଷାରାଜା ଯଦି ଏଠାରେ ରହୁଥାଏ, ତେବେ ତାର ମୂଷା ପ୍ରଜାମାନେ ବି ଏଠାରେ ନିଶ୍ଚୟ ରହୁଥିବେ ।

ଏହା ଭାବି ସେ ଲୁଚି କରି ଅପେକ୍ଷା କଲା । ପ୍ରକୃତରେ ମୂଷାରାଜା ସାଙ୍ଗରେ ଅନେକ ପ୍ରଜା ଖାଦ୍ୟ ଅନ୍ୱେଷଣରେ ଜଙ୍ଗଲ ଭିତରକୁ ଯାଉଥାଆନ୍ତି । ବିଲୁଆ ସେମାନଙ୍କ ମଧ୍ୟରୁ କିଛି ମୂଷା ସାଙ୍ଗେ ସାଙ୍ଗେ ଖାଇ ପାରିଥାଆନ୍ତା । କିନ୍ତୁ ଥରେ ମୂଷାମାନଙ୍କୁ ଆକ୍ରମଣ କରି ଖାଇଦେଲେ ସେମାନେ ସତର୍କ ହୋଇ ଅନ୍ୟ ଜାଗାକୁ ଚାଲିଯିବେ । ତେଣୁ ଚତୁର ବିଲୁଆ ଗୋଟିଏ ଉପାୟ ପାଞ୍ଚିଲା ।

ପରଦିନ ମୂଷାରାଜା ଦେଖିବାକୁ ପାଇଲା, ବିଲୁଆଟି ଗୋଟିଏ ଗୋଡ଼ରେ ଠିଆ ହୋଇଛି । ପାଟି ଆଁ କରି ସୂର୍ଯ୍ୟଙ୍କ ଆଡ଼କୁ ଚାହିଁଛି । ମୂଷାରାଜା ଆଶ୍ଚର୍ଯ୍ୟ ହୋଇ ବିଲୁଆକୁ ଏହାର କାରଣ ପଚାରିଲା । ବିଲୁଆ କହିଲା, "ମୁଁ ଗୋଟିଏ ଗୋଡ଼ରେ ଠିଆ ହେବାରୁ ବସୁଧାକୁ ଅନ୍ୟ ତିନିଗୋଡ଼ର ଭାର ବୋହିବାକୁ ଟିକେ ହାଲୁକା ହେଉଛି । ପାଟି ଆଁ କରି ପବନ ପିଇ ମୁଁ ଜୀବନଧାରଣ କରୁଛି । ସୂର୍ଯ୍ୟଙ୍କ ଆଡ଼କୁ ଚାହିଁ ତାଙ୍କୁ ମୁଁ ଧ୍ୟାନ କରୁଛି ।" ମୂଷା ରାଜା ବିଲୁଆର ତପସ୍ୱୀ ରୂପ ଦେଖି ଧନ୍ୟ ହୋଇଗଲେ । ଅନ୍ୟ ପ୍ରଜା ମୂଷାମାନେ ରାଜାଙ୍କ ସହ ବାହାରକୁ ଗଲାବେଳେ ବିଲୁଆକୁ ମୁଣ୍ଡିଆ ମାରି ପୂଜା କରୁଥିଲେ ।

ମୂଷାରାଜାଙ୍କ ସାଙ୍ଗରେ ଅନ୍ୟ ମୂଷାମାନେ ଧାଡ଼ି ବାନ୍ଧି ଗଲାବେଳେ ପଛରେ ପଡ଼ିଥିବା ମୂଷାଙ୍କୁ ବିଲୁଆ ଗୋଟିଏ ଗୋଟିଏ ଖାଇଦେଉଥିଲା । ସେମାନେ ବାହାରକୁ ଗଲାବେଳେ ଗୋଟିଏ ମୂଷା, ଫେରିଲାବେଳେ ଗୋଟିଏ ମୂଷା ବିଲୁଆ ପ୍ରତିଦିନ ଖାଇଦେଉଥିଲା । କିଛି ଦିନ ପରେ ମୂଷାରାଜା ବିଲୁଆକୁ ଦେଖି ଭାବିଲା– ବିଲୁଆ କେବଳ ପବନ ପିଉଛି, ଅଥଚ ସେ ବେଶ୍ ସ୍ୱାସ୍ଥ୍ୟବାନ ଦିଶୁଛି ! ଏହାର କାରଣ କ'ଣ ?

ଏପରି ସମୟରେ ମୂଷା ମନ୍ତ୍ରୀ ଆସି କହିଲେ, "ଆମ ପ୍ରଜାମାନଙ୍କର ସଂଖ୍ୟା କମିଯାଇଛି ଏ ମଧ୍ୟରେ । ପ୍ରାୟ ପଚାଶ ମୂଷାଙ୍କୁ ମୁଁ ଦେଖିବାକୁ ପାଉନି ।"

ମୂଷାରାଜା ଆଶ୍ଚର୍ଯ୍ୟ ହୋଇ ଭାବିଲେ– ବିଲୁଆର ସ୍ୱାସ୍ଥ୍ୟରେ ଉନ୍ନତି ହେଉଛି ଓ ଆମ ପ୍ରଜାମାନଙ୍କର ସଂଖ୍ୟା କମିଯାଉଛି । ବିଲୁଆ ଆମ ପ୍ରଜା ମୂଷାମାନଙ୍କୁ ଖାଇଯାଉନି ତ !

ପରଦିନ ସେମାନେ ଘରୁ ବାହାରିଲାବେଳେ ମୂଷାରାଜା ପଛକୁ ନଜର ରଖି ଆସ୍ତେ ଆସ୍ତେ ଯାଉଥାଏ । ଶେଷ ମୂଷା ବାହାରିଲାବେଳକୁ ବିଲୁଆ ତାକୁ ଚାପି ଧରିଲା । ରାଜା ମୂଷା ସାଙ୍ଗେ ସାଙ୍ଗେ ଡେଇଁପଡ଼ି ବିଲୁଆ ବେକ ଉପରେ ବସି ଚିତ୍କାର କଲା । ଅନ୍ୟ ମୂଷା ସବୁ

ଆସି ଦୌଡ଼ାଦୌଡ଼ି କରି ବିଲୁଆ ଚାରିପାଖରେ ଘେରିଗଲେ ଓ ସେମାନଙ୍କ ମୁନିଆ ଦାନ୍ତରେ ବିଲୁଆର ଚମଡ଼ାକୁ ଟିକ୍‌ଟିକ୍ କରି କାଟିଲେ । ରାଜା ମୂଷା ବିଲୁଆର ତଣ୍ଟିକୁ କଣା କରି ତାକୁ ମାରିଦେଲା ।

ଏହା ପରେ ମୂଷାମାନେ ଅନେକ ଦିନ ଧରି ବିଲୁଆ ମାଂସ ଖାଇଲେ । ମୂଷା ରାଜାଙ୍କ ବୁଦ୍ଧି ଯୋଗୁଁ ତାଙ୍କର ପ୍ରଜାମାନେ ସୁଖଶାନ୍ତିରେ ରହି ପାରିଲେ ।

*ଅରୁଣୋଦୟ ନଗର, କଟକ-୧୨*

## ଗୋଟେ ଇନିଂସ୍‌ରେ ୧୦୦୯ ରନ୍

ଭାରତରେ କ୍ରିକେଟ୍ ଖୁବ୍ ଜନପ୍ରିୟ ଖେଳ । କ୍ରିକେଟ୍‌ରେ ଷୋହଳ ବର୍ଷରୁ କମ୍ ଖେଳାଳିଙ୍କ ଗୋଟେ ପ୍ରତିଯୋଗିତା ପ୍ରତି ବର୍ଷ ହୁଏ । ଏ ବର୍ଷ ପ୍ରତିଯୋଗିତା କଲ୍ୟାଣଠାରେ ହୋଇଥିଲା । ଏଥିରେ ବିଜେତା ଦଳକୁ ଭଣ୍ଡାରି ଟ୍ରଫି ପ୍ରଦାନ କରାଯାଏ । ଏଥର ଖେଳରେ କେ.ସି ଗାନ୍ଧି ସ୍କୁଲ ଏବଂ ଆର୍ଯ୍ୟ ଗୁରୁକୁଳ ସ୍କୁଲ୍ ମଧ୍ୟରେ କ୍ରିକେଟ୍ ଖେଳ ଚାଲିଥାଏ । ଗାନ୍ଧୀ ସ୍କୁଲ ଦଳରେ ଖେଳନ୍ତି ପ୍ରଣବ । ଦଶମ ଶ୍ରେଣୀର ଛାତ୍ର । ବାପା ପ୍ରଶାନ୍ତ ଧନୱାଡ଼େ ରିକ୍ସା ଚଳାନ୍ତି । ମା'ମୋହିନୀ ରନ୍ଧା ଖାଦ୍ୟ ଯୋଗାଇଥା'ନ୍ତି, ନ ହେଲେ ଘର ଚଳିବ କିପରି ?

ଖେଳ ଆରମ୍ଭ କରନ୍ତି ଆକାଶ ସିଂହ ଓ ପ୍ରଣବ ଧନୱାଡ଼େ । ସେମାନେ ୫୪୬ ରନ୍ କରିଥା'ନ୍ତି । ଆକାଶ ୧୭୩ ରନ୍‌ରେ ଆଉଟ୍ । ତା'ପରେ ଆସିଲେ ସିଦ୍ଧେଶ ପାଲ୍ଲୁ । ପାଟିଲ୍ ବି ୧୩୮ ରନ୍ ପରେ ଚାଲିଗଲେ । ଏ ଦୁହେଁ କଲେ ୫୩୦ ରନ୍ । ମାତ୍ର ଦୁଇ ୱିକେଟ୍ ପତନରେ ୧୦୭୬ ରନ୍ । ଶାଶ୍ୱତ, ଜଗତାପ ତୃତୀୟ ୱିକେଟ ପାଇଁ ଆସିଲେ । ସେ ମାତ୍ର ୫୮ ରନ୍ କଲେ ।

କୋଚ୍ ହରିଶ ଶର୍ମା ପ୍ରଣବ ପାଇଁ ଖୁବ୍ ଗର୍ବିତ । ଏକାଥରକେ ଗୋଟେ ଇନିଂସରେ ୧୦୦୯ ରନ୍! ପୃଥିବୀରେ କୋଉଠି ବି ଜଣେ ହେଲେ ଖେଳାଳି ଏଭଳି ଚମତ୍କାରିତା ଦେଖାଇନି । ଏଥିରେ ୧୨୯ଟି ଚାରି ୫୯ଟି ଛକା ଥିଲା । ମାତ୍ର ଦୁଇଟି ଦିନରେ ପ୍ରଣବଙ୍କ ଯୋଗୁଁ ୧୩୬୨ ରନ୍‌ରେ ତାଙ୍କ ଦଳ ଜିତିଗଲା । କ୍ରିକେଟ୍‌ରେ କେହି ୭୦୦ ରନ୍ କରିଥିବା ଜଣାନାହିଁ । ଭାରତର ପୃଥ୍ୱୀଶା ୫୮୬ ରନ୍‌ର ରେକର୍ଡ କରିଥିଲେ ।

ପ୍ରଣବଙ୍କ ପିତା ପ୍ରଶାନ୍ତ ଜଣେ ଭଲ ଟେନିସ୍ ବଲ୍ ଖେଳାଳି କ୍ରିକେଟିଅର୍ । ପ୍ରଶାନ୍ତ କହନ୍ତି– ଜଣେ ରିକ୍ସାଚାଳକର ପୁଅ ହୋଇ ପ୍ରଣବ ଯେ ବିଶ୍ୱରେ ଗୋଟେ ରେକର୍ଡ ସ୍ଥାପନ କଲା, ଏହା ହିଁ ଆମକୁ ଧନ୍ୟ କରିଦେଇଛି ।" ସେଥିପାଇଁ ଆମେ ଢେର୍ ଖୁସି ।"

ଏବେ ଶଚିନ୍, ଦ୍ରାବିଡ୍, ଅଜିଂକ୍ୟ, ଧୋନି, ପ୍ରମୁଖ ପୃଥିବୀର ନାମୀଦାମୀ ଖେଳାଳି ତାଙ୍କୁ ପ୍ରଶଂସା ଓ ବଧାଇ ଜଣାଇଛନ୍ତି । ସୁଖର କଥା– ମହାରାଷ୍ଟ୍ର ସରକାର ଏଇ ସ୍ପେଶାଲ୍ କିଡ୍‌ଙ୍କ ପଢ଼ାପଢ଼ି ଓ ଖେଳର ଦାୟିତ୍ୱ ନେବାକୁ ପ୍ରତିଶ୍ରୁତି ଦେଇଛନ୍ତି ।

--- **ଡ. ଶୁଭେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ,** *ଯଦୁମଣିପାଟଣା, ରେଢ଼ାଖୋଲ, ସମ୍ବଲପୁର*

## ଜନଶ୍ରୁତି – ଆମର ଢଗଢ଼ମାଳି

ଶ୍ରୀ ଅନ୍ତର୍ଯ୍ୟାମୀ ଲେଙ୍କା

"ମଲ୍ଲୀ ଶାଶୂଘର ପଲ୍ଲୀରେ
ମଲ୍ଲୀ ମୁଗ ଭାଜୁଥିଲା ବାଲିରେ
ପାନ ଖାଇ ଓଠ ନାଲିରେ
ମଥାରେ ସିନ୍ଦୂର ଟୋପାରେ ।"

ଆମ ସାହିତ୍ୟରେ ପାନ ଗୋଟେ ଭଲ ଆସ୍ଥାନ ଜମାଇଛି । ସାମାଜିକ ଓ ପାରିବାରିକ ଜୀବନଚର୍ଯ୍ୟା ମଧ୍ୟରେ ପାନ ଭାବ ଆଦାନପ୍ରଦାନର ଏକ ସୁନ୍ଦର ମାଧ୍ୟମ ସାଜିଛି । ଉତ୍ସବ ପାଳନ ମଧ୍ୟରେ ପାନ ଖଣ୍ଡେ ମୁଖବାସ ପାଇଁ ବ୍ୟବହାର କରିବା ଓଡ଼ିଆ ଚଳଣିର ଏକ ବ୍ୟବହାରିକ ଅଭ୍ୟାସ । ସେଥିପାଇଁ ରଜପର୍ବଠାରୁ ଆରମ୍ଭ କରି ନାନାଦି ପର୍ବପର୍ବାଣିରେ ସ୍ତ୍ରୀପୁରୁଷ ନିର୍ବିଶେଷରେ ସମସ୍ତଙ୍କ ପାଟିରେ ଥାଏ ପାନଖିଲ ।

ଆମର, ସଂସ୍କୃତି ଓ ପରମ୍ପରା ଓତପ୍ରୋତ ଭାବେ ଜଡ଼ିତ । ସୁତରାଂ ସଂସ୍କୃତିର ନିଖୁଣ ଚିତ୍ର ପ୍ରତିଫଳିତ ହୋଇଥାଏ ସାହିତ୍ୟରେ । ଯେହେତୁ ପାନ ସଂସ୍କୃତିକୁ ରସାଳ କରି ରଖିଛି, ଏହା ସ୍ୱାଭାବିକ ଯେ ଓଡ଼ିଆ ସାହିତ୍ୟର ପ୍ରତ୍ୟେକ ବିଭାଗକୁ ପାନ ଅନ୍ବେବହୁତେ ସ୍ପର୍ଶ କରିଛି । ତେବେ ପାନର ପ୍ରଚଳନ ଓଡ଼ିଶାରେ ବହୁ ପ୍ରାଚୀନ ।

ପାନ ଏକ ଲତାର ପତ୍ର । ଏ ଗଛ ବେଶି ଖରା ବା ବର୍ଷା ସହିପାରେ ନାହିଁ । ତେଣୁ ଢିପ ଜାଗା ଓ ପାନବରଜ ଛାୟା ଭିତରେ ପାନ ଲଗାଯାଏ । ଏହାର ଫୁଲ, ଫଳ ବା ମଞ୍ଜି ନାହିଁ । ଲତାର ଡାଙ୍ଗକୁ ପୋତି ନୂଆ ଗଛ କରାଯାଏ । ଭାରତର ଅନେକ ଅଞ୍ଚଳରେ, ବିଶେଷତଃ ଓଡ଼ିଶାରେ ପାନ ଚାଷ କରାଯାଏ । କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲାରେ ଅନେକ ପାନ ବରଜ ଅଛି । ଓଡ଼ିଆମାନେ ବହୁ ପରିମାଣରେ ପାନ ଖାଆନ୍ତି । ପାନରସ କଫ ଆଦି ରୋଗର ଔଷଧର ଅନୁପାନ ଭାବେ ବ୍ୟବହୃତ ହୁଏ । ବଥ ମୁହଁରେ ବାଇଗଣି ଡାଙ୍ଗ ଦେଇ, ପାନପତ୍ରରେ ଗରମ ଘିଅ ମାରି ବଥ ଉପରେ ପକାଇଲେ ପୂଜ ସବୁ ନିଗାଡ଼ି ଆଣିଥାଏ । ପାନପତ୍ର ସହ ଗଳିଗୁଆ ଓଷା, ବିବାହ, ବ୍ରତ, ଏକୋଇଶା ଆଦି ପ୍ରାୟ ସମସ୍ତ ଶୁଭ କାର୍ଯ୍ୟରେ ଲୋଡ଼ା ପଡ଼ିଥାଏ ।

ଆମର ପ୍ରାୟ ଶତଭାଗ ଓଡ଼ିଆଙ୍କ ଘରେ ତେଲ, ଲୁଣ ସଂସାରକୁ ନେଇ ପ୍ରତିଦିନ ଆବଶ୍ୟକ ସାମଗ୍ରୀ ଚିଠାରେ– ପାନ, ଗୁଆ, ଗୁଣ୍ଡି, ଖଇର, ଚୂନ ଏବଂ ତା ସହିତ ପାନ ମସଲା ମୁଖ୍ୟ ଭୂମିକା ଗ୍ରହଣ କରି ଆସିଛି । ପରିବାରରେ କିଛି ଲୋକ ଓ ପିଲାମାନେ ପାନ ଖାଉ ନ ଥିଲେ ମଧ୍ୟ ଅଧିକ ସଦସ୍ୟ ଖାଇଥାନ୍ତି । ପିଲାଦିନୁ ମୁଁ ଦେଖିଛି ମୋ ବୋଉ ଗୁଣ୍ଡି ଓ କେତକୀ ଖଇର ଘରେ

ପ୍ରସ୍ତୁତ କରାନ୍ତି । ଏଥିପାଇଁ ୪/୫ ଦିନ ଲେଖାଁ ଘରେ ପ୍ରସ୍ତୁତି ପର୍ବ ଚାଲୁ ରହିଥାଏ । ଗୁଣ୍ଡି ପାଇଁ ଚାଉଳି ଧନିଆ, ପାନମଧୁରୀ, କଳାଜିରା, ବାଇଗଣୀପତ୍ର, ଚୁଆର ଆବଶ୍ୟକ ହୋଇଥାଏ ।



ସେପରି ଭାବେ ଘରେ ପ୍ରସ୍ତୁତ ହେଉଥିବା ଗୁଣ୍ଡି ଶରୀର ପାଇଁ ବିଶେଷ କ୍ଷତିକାରକ ନ ଥିଲା । ମାତ୍ର ଏବେ ଯେଉଁ ଗୁଣ୍ଡି, ଜର୍ଦ୍ଦା, ଗୁଟ୍‌କା ଓ ପାନମସଲା ଦିଆ ପାନଖିଲ ବଜାରରେ ବିକ୍ରି ହେଉଛି, ତାହା ବହୁତ କ୍ଷତିକାରକ, ଯଦିଓ ତାହା ପାଟିକୁ ସୁଆଦ ଲାଗୁଛି । କେତକୀ ଖଇର ତିଆରି କରିବା ପାଇଁ ଖଇରକୁ ଗୁଣ୍ଡ କରି ପାଣିରେ ବତୁରାଇ ଚକଟି ଦିଆଯାଏ । ସେଥିରେ ଗନ୍ଧଶୁଣ୍ଠି, ଅଳେଇଚ, ଗୁଜୁରାତି ଭଳି କେତେକ ମସଲା ଗୁଣ୍ଡ କରି ପକାଇ କେତକୀ ଫୁଲର ଲମ୍ବ ଡେଙ୍ଫ ଦୁଇଟିରେ ଯଥା ପରିମାଣର ଖଇର ଭର୍ତ୍ତି କରି ଶୁଖିଲା କଦଳୀ ବାସୁଙ୍ଗାରେ ବାନ୍ଧି ଡାଲାମାନଙ୍କରେ ରଖି ଖରାରେ ଶୁଖାଇ ଦିଆଯାଏ । ସେପରି ଖଇର ପାଟିକୁ ସ୍ୱାଦକର ଓ ହିତକର । ଅନେକ ଦିନ ରହିଥାଏ ।

ଝିଅ ବିବାହ ହୋଇ ଶାଶୂଘର ଗଲାବେଳେ ବହୁ କିସମର ସାମଗ୍ରୀ ତ ନିଶ୍ଚୟ ସାଥିରେ ନେବାକୁ ହୋଇଥାଏ । ଏଥି ସହ ପାନ, ଗୁଆ, ଗୁଣ୍ଡି, ଖଇର, ମସଲା ଇତ୍ୟାଦି ସହ ଶ୍ୱଶୁରଙ୍କ ପାଇଁ ଏକ ସୁନ୍ଦର ବଟୁଆ ଓ ତା' ମଧ୍ୟରେ ଗୁଆକାତି, ପାନ, ଚୂନଦାନି ମଧ୍ୟ ଦିଆ ଯାଇଥାଏ । ଏହା ପ୍ରତ୍ୟେକ ଓଡ଼ିଆଙ୍କ ଘରେ ଏକ ପ୍ରଥା ଏବଂ ବାଧ୍ୟତାମୂଳକ ରହିଥିବାର ଜଣାଯାଏ ।

ଏପରିକି ପୁରାତନ ରଚନାମାନଙ୍କରେ ବି ପାନର ବ୍ୟବହାର ଦୃଷ୍ଟିଗୋଚର ହୋଇଥାଏ । ଏକ ପୁରାତନ ଓଡ଼ିଶୀ ସଂଗୀତ ମଧ୍ୟରେ ପାନକୁ ମାଧ୍ୟମ କରି ମନତୋଷ ମେଣ୍ଟାଇବାର ପ୍ରୟାସ କରାଯାଇଛି–

"ମଲ୍ଲିମାଳ ଶ୍ୟାମକୁ ଦେବି ମନ ତୋଷିବି
ସେ ଯେବେ କରିବେ ମାନ ଭାଙ୍ଗି ଭୁଞ୍ଜାଇବି ପାନ
ଗଣ୍ଡେ ଦେଇଣ ଚୁମ୍ବନ ହରଷ କରାଇବି.....ମଲ୍ଲିମାଳ ।"

ବ୍ୟାସକବି ଫକୀରମୋହନଙ୍କ କାବ୍ୟ ସୃଷ୍ଟିରେ ପାନ କେତେବେଳେ ବ୍ୟଙ୍ଗାତ୍ମକ ଢଙ୍ଗରେ ପ୍ରୟୋଗ ହୋଇଛି ତ ଅନ୍ୟ କେଉଁଠି ଇଂରେଜଙ୍କ ବିରୋଧରେ ପ୍ରତୀକାତ୍ମକ ଶବ୍ଦ ଭାବେ ପ୍ରୟୋଗ କରାଯାଇଛି । ପାନର ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଛନ୍ତି, "ଜଗତ ଦୁର୍ଲଭ ପାନ ତହିଁ ଗୁଣ୍ଡି ପୁଣି ଅମୃତ ଫୋପାଡ଼ି ଦେବେ ଦେବତାଏ ଶୁଣି ।"

ନିଜ ଅନନ୍ୟ କଥାସୃଷ୍ଟି 'ଛ'ମାଣ ଆଠଗୁଣ୍ଠ'ରେ ସେ ରାମଚନ୍ଦ୍ର ମଙ୍ଗରାଜଙ୍କ ଦାସୀ ଚମ୍ପାଦେଈର ବର୍ଣ୍ଣନା କରିବାକୁ ଯାଇ ବର୍ଣ୍ଣନା କଲେ, "କଜଳ ପୂରିତ ଲୋଚନ ଭାଲେ, ଗୁଣ୍ଡିମିଶା ଖିଲି ଗୁଞ୍ଜିତ ଗାଲେ ।"

ଠିକ୍ ସେହିପରି ଇଂରେଜ ସୈନ୍ୟଙ୍କ କବଳରୁ ଗଡ଼ ରକ୍ଷା କରିବାକୁ ଯାଇ ରାଜାଙ୍କ ଉଦ୍ଦେଶ୍ୟରେ ସେ ଯାହା ଲେଖିଥିଲେ, ତାହା ହେଲା, "ଲୋକନାଥ ଖମାରିଆ ଜାଣିବୁ ଅତି ଶୀଘ୍ର ଶହେ ପାନ, ଦୁଇଶହ ଗୁଆ ପଠେଇବୁ । ଉତ୍ତର ପଟୁ ମାହାରା କରି ଆଖୁବିଲକୁ ପାଣି ମଡ଼େଇବୁ ନ ହେଲେ ଆଖୁବିଲର ନାଶ ଯିବ ।" ଖମାରିଆ ପାଖକୁ ଲେଖା ହୋଇଥିଲେ ମଧ୍ୟ ତାହା ରାଜାଙ୍କ ଉଦ୍ଦେଶ୍ୟରେ ଥିଲା ଏବଂ ପତ୍ରବାହକକୁ

କୌଶଳରେ କେନ୍ଦୁଝର ଗଡ଼ ରାଜାଙ୍କ ପାଖରେ ପହଞ୍ଚାଇବାର ହୁକୁମ ଥିଲା । ଏଠାରେ ପାନର ଅର୍ଥ ଥିଲା ସୈନ୍ୟ, ଗୁଆର ଅର୍ଥ ବନ୍ଧୁକ ଗୁଳି ଓ ଆଖୁ କିଆରି ହେଲା ରାଜାଙ୍କ ଗଡ଼ ।

ଫକୀର ମୋହନ ସେନାପତି-(୧୮୪୩-୧୯୧୮) ଓଡ଼ିଆ ଉପନ୍ୟାସର ଜନ୍ମଦାତା ରୂପେ ସୁପରିଚିତ । ବାଲେଶ୍ୱର ସହର ନିକଟସ୍ଥ ମଲ୍ଲିକାଶପୁର-ଠାରେ ତାଙ୍କର ଜନ୍ମସ୍ଥାନ । ସେ ପିଲାଦିନୁ ପିତୃମାତୃହୀନ ହୋଇ ଉଚ୍ଚଶିକ୍ଷା ଲାଭ କରି ନ ପାରି ଶିକ୍ଷକତା କରିଥିଲେ । ଓଡ଼ିଶାରେ ବଙ୍ଗଳା ଭାଷା ଚଳେଇବାକୁ ବଙ୍ଗାଳିମାନେ ଯେଉଁ ଉଦ୍ୟମ ସେତେବେଳେ କରିଥିଲେ, ତା' ବିରୋଧରେ ସେ ଆପ୍ରାଣ ଲଢ଼ିଥିଲେ । ସେ ନିଜ ଚେଷ୍ଟାରେ ବାଲେଶ୍ୱରରେ ଗୋଟିଏ ଛାପାଖାନା ବସାଇ 'ସମ୍ବାଦ ବାହିକା', 'ବୋଧଦାୟିନୀ' ନାମକ ଦୁଇଖଣ୍ଡ ପତ୍ରିକା ପ୍ରକାଶ କରିଥିଲେ ।

ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ସାରସ୍ୱତ ସର୍ଜନାରେ ବି ପାନକୁ ଅଣଦେଖା କରାଯାଇନାହିଁ । ସାହିତ୍ୟ ସୃଷ୍ଟି ସେତେବେଳେ ସାର୍ଥକ ହୋଇଥାଏ, ଯେତେବେଳେ ତାହା ସମାଜର ପ୍ରତ୍ୟେକ ସ୍ତର, ପ୍ରତ୍ୟେକ ବିଷୟକୁ ଆବୋରି ନେଇଥାଏ । କବି ବା କିପରି ପାନକୁ ନିଜ କୃତିରେ ସ୍ଥାନ ଦେଇ ନ ଥା'ନ୍ତେ; ଯାହା ଓଡ଼ିଆ ସାହିତ୍ୟକୁ ଜନଜୀବନକୁ ସମ୍ମୋହିତ କରି ରଖିପାରିଛି । ସୁତରାଂ ସେ ଲେଖିଲେ–

ଚଷାଠାରୁ ଆରମ୍ଭି ରାଜଦରବାର
ସବୁଠାରେ ରହିଅଛି ପୂର୍ଣ୍ଣ ଅଧିକାର ।
ରମ୍ଭାପତ୍ର ଆରମ୍ଭି ସୁବର୍ଣ୍ଣ ବାସନ
ନାନା କର ହୁଅଇ ପର୍ଣ୍ଣର ଆସନ ।
ପାନ ଧରି ହାଟକୁ ଚାଲଇ ହାଟୁଆ
କେହି ଜାକେ କାଖରେ ପାନର ବଟୁଆ ।

ପାନକୁ ନେଇ ଅନେକ ଗୀତିକବିତା ରଚିତ ହୋଇଛି । ସେହିପରି ଏହାର ବ୍ୟବହାର ପଲ୍ଲୀଗୀତ, କାନ୍ଦଣା ଗୀତ, ରଜଦୋଳି ଗୀତ, ସମ୍ବଲପୁରୀ ଗୀତ, ଓଡ଼ିଆ ଚଳଚ୍ଚିତ୍ର ସଂଗୀତ ତଥା ଢଗଢମାଳିମାନଙ୍କରେ ବି ଦୃଷ୍ଟିଗୋଚର ହୋଇଥାଏ ।

ବାଉଁଶ ଅଗରେ ଧାନ,
ମୁଁ ଦେବି କଉଡ଼ି ଖାଇବୁ ପାନ
ଏବେ ଚାଲ ଯିବା ବୃନ୍ଦାବନ, ବଉଳ ଲୋ
ନଇଁଆସେ ନୂଆ ଜହ୍ନ, ବଉଳ ଲୋ ।



ଓଡ଼ିଶାର ପୁରପଲ୍ଲୀରେ ଝିଅମାନଙ୍କର ପୁଚିଖେଳ ଆଦୃତ ଥିଲା । ସେହି ଖେଳମାନଙ୍କରେ ବୋଲାଯାଉଥିବା ଗୀତଗୁଡ଼ିକରେ ମଧ୍ୟ ପାନର ଠିକ୍ ବ୍ୟବହାର ହେଉଥିଲା । "ପୁଚିଲୋ ଘୁଞ୍ଚି ଯା, ଓଳି ତଳେ ଲୁଚି ଯା, ମଇଁଷିଆ ଭାଇ କିଏ ରେ, ପାନ ଖୋଜିନେ, ଗୁଆ ଖୋଜିନେ, ଭାଇଙ୍କ ସାଥିରେ ଯିଏ ରେ ।"

ସେହିପରି ପଶ୍ଚିମ ଓଡ଼ିଶା ଅଞ୍ଚଳରେ ପୁଚିଖେଳକୁ, 'ଛିଲୋ ଭାଇ' ଖେଳ କୁହାଯାଏ । ସେହି ଖେଳର ଗୀତରେ ମଧ ପାନ ଶବ୍ଦର ବ୍ୟବହାର ଦେଖିବାକୁ ମିଳେ । "ଛି ଲୋ ଭାଇ, ଆ ଖେଳମା ଭାଇ / ମାମୁର ଘରେ ଧାନ / କେତେ ଖାଇବୁ ପାନ ପାନ ପାନ.... ।" ଲୋକ ସଂଗୀତ ବ୍ୟତିରେକ ପାନ ଶବ୍ଦର ବ୍ୟବହାର ଓଡ଼ିଆ

ଢଗଢମାଳିରେ ବ୍ୟବହୃତ ହୋଇଛି । "ମଲ୍ଲି ଶାଶୂଘର ପଲ୍ଲିରେ..... ।"

ଦେଖିବାକୁ ଗଲେ, ଆମ ସାମାଜିକ ଜୀବନ ସହିତ ପାନର ସମ୍ପର୍କ ଖୁବ୍ ନିବିଡ଼ । ଏପରିକି ଆମର ଆରାଧ୍ୟ ଦେବତା ଜଗତର ନାଥ ଜଗନ୍ନାଥଙ୍କୁ ବିଡ଼ିଆ ପାନ, କର୍ପୂର, ପାନ, ଲବଙ୍ଗ ଦ୍ୱାରା ମଣୋହି କରାଯାଏ । ବିବାହ, ବ୍ରତ, ବିଭିନ୍ନ ଓଷାରେ ପାନର ବ୍ୟବହାର କରାଯାଏ । ତ୍ରିନାଥ ମେଳାରେ (ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ଏକତ୍ର ପୂଜା) ଠାକୁରଙ୍କୁ ବିଡ଼ିଆ ପାନ ଅର୍ପଣ କରାଯାଏ । ବାଷ୍ପଚାଳିତ ଯାନ ଉଦ୍ଭାବିତ ହେବା ପୂର୍ବରୁ ପାଲଟଣା ବୋଇତରେ ଲୋକେ ସମୁଦ୍ର ପାରି ହେଉଥିଲେ । ପ୍ରାଚୀନ ଉତ୍କଳୀୟମାନେ ବୋଇତ ନିର୍ମାଣ ଓ ଚାଳନାରେ ଖୁବ୍ ଦକ୍ଷ ଥିଲେ । ସେମାନଙ୍କର ବୋଇତ, ବାଣିଜ୍ୟ ଇତିହାସପ୍ରସିଦ୍ଧ । ଓଡ଼ିଶାର କେତେକ ନଦୀ ମୁହାଣରେ ଥିବା ବୋଇତକୁଦ, ଭାଷାରେ ପ୍ରଚଳିତ ଜାହାଜିଆ ଶବ୍ଦ, କାର୍ତ୍ତିକ ପୂର୍ଣ୍ଣିମାର ଡଙ୍ଗାଭସା, ଠାକୁରାଣୀ ଗାଧୁଆ ଓ କାର୍ତ୍ତିକ ଅମାବାସ୍ୟା, ପରଦିନ ବୋଇତ ଚିତ୍ରର ପୂଜା ଓ କାହାଣୀରେ ସାଧବ ବୋହୂର ବୋଇତ ବନ୍ଦାପନା ଆଦି ତାହାର ସ୍ମାରକ ।

ସେହି ପୂର୍ବକଥାକୁ ମନେପକାଇ ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମାର ପାହାନ୍ତାରୁ ଆମେ ନଦୀ, ନାଳ, ପୋଖରୀ ଓ



ସମୁଦ୍ରମାନଙ୍କରେ କଦଳୀପାଟୁଙ୍ଗା କିମ୍ବା କାଗଜର ଡଙ୍ଗା ଭସାଇ ବ୍ରତ ଭଳି ପାଳନ କରିଆସୁଅଛୁ । ସେହି ତଥାକଥିତ ଡଙ୍ଗାମାନଙ୍କର ଦୀପ (ଆଲୋକ) ସହ ପାନ-ଗୁଆ ଇତ୍ୟାଦି ଦେଇ ଭସାଇଦେଇ ଗାଉଛୁ, "ଆ କା ମା ବୈ, ପାନ ଗୁଆ ଖାଇ, ପାନ ଗୁଆ ତୋର ମାସକ ଧରମ ମୋର ।" ଏହି ପଂକ୍ତିଟି ଓଡ଼ିଆ ଜନମାନସର ଏକ ଧାର୍ମିକ ଅଭିବ୍ୟକ୍ତି । ଏହି ପରମ୍ପରା ରକ୍ଷା କରି ଆମେ ଗର୍ବ ଅନୁଭବ କରିଥାଉ । ହିନ୍ଦୀ ଚଳଚ୍ଚିତ୍ର 'ଡନ୍'ରେ ପାନକୁ ନେଇ ସୁନ୍ଦର ଗୀତଟିଏ ଲୋକପ୍ରିୟ ହୋଇଥିଲା – ପାନ୍ ବନାରସୱାଲା / ଖାଇକେ ବନ୍ଦ ଅକଲକି ତାଲା...




ଏହି ପାନର ମଧୁର ଶବ୍ଦଟି ନେଇ ମୋ ମୁଣ୍ଡରେ ବାରମ୍ବାର କଥାଟିଏ ଧକ୍କା ଖାଉଛି । ଏଣୁ କଥାଟି ଲେଖିବାକୁ ବାଧ୍ୟ ହେଉଛି । ପ୍ରାୟ ଚାଳିଶ ବର୍ଷରୁ ଅଧିକ ଦିନର କଥା । ସେତେବେଳେ ଡାକ୍ତର ଜ୍ୟୋତ୍ସ୍ନା ଦେଈ କଟକ ବଡ଼ ଡାକ୍ତରଖାନାରେ ପ୍ରଫେସର ଥାଆନ୍ତି । ମୋ ସ୍ତ୍ରୀଙ୍କର ଟିଉମର୍ ଅପରେସନ୍ ସେ କରିଥାନ୍ତି । ମୋ ସ୍ତ୍ରୀ ପାନ ଖାଆନ୍ତି । ଅପରେସନ୍‌ର ପରଦିନ ପାନ ଖଣ୍ଡେ ଖାଇବା ପାଇଁ ସେ ବଡ଼ ଉହଳବିକଳ ହେଲେ । ଅନ୍ୟ ଡାକ୍ତର ପାନ ନ ଖାଇବା ପାଇଁ କଡ଼ା ତାଗିଦ୍ କରିଥିଲେ । ପାନଖଣ୍ଡେ ତାଙ୍କୁ ମିଳିଲା ନାହିଁ, ଯଦିଓ ସେ ସିଷ୍ଟରମାନଙ୍କୁ ବହୁ ନେହୁରା ହୋଇଥିଲେ । ସେ ଦିନ କଟିଗଲା ।



# ଦୋଳ ଯାତରା

ଶ୍ରୀ ଲକ୍ଷ୍ମୀକାନ୍ତ ଦଳେଇ

ଦୋଳ ଯାତ ଆସେ ବରଷେ ଥରେ
ମଜା ଓ ମଉଜ ସବୁରି ଘରେ
ଖୁସିରେ ନାଚଇ ମନ
ଚିକିମିକି କୁନି ତାରାଙ୍କ ମେଳରେ
ଖିଲିଖିଲି ହସେ ଜହ୍ନ ।

ସଜବାଜ ହୋଇ ଆସଇ ଦୋଳ
ଅବିର ଖେଳରେ ସଭିଏଁ ଭୋଳ
ଦୋଳ ଗାଁ ଗାଁ ବୁଲେ
ଘଣ୍ଟଘଣ୍ଟା, ଶଙ୍ଖ, ମୃଦଙ୍ଗ ବାଜଇ
ଆମ୍ବ ପେନ୍ଥିପେନ୍ଥି ଝୁଲେ ।

ବିମାନରେ ରାଧାମାଧବ ବସି
ଭକତଙ୍କୁ ଚାହିଁ ଦିଅନ୍ତି ହସି
ଭକତିରେ ନୋଇଁ ମଥା
ଭୋଗରାଗ କରି ଦିଅନ୍ତୁ ସଭିଏଁ
ଜଣାନ୍ତି ମନର କଥା ।

ବିମାନରେ ଦିଅଁ ଆନନ୍ଦେ ଝୁଲି
ମେଳନ ପଦାକୁ ଥାଆନ୍ତି ବୁଲି
ଦୋକାନ ବଜାର ବସେ
ଗହଳି ଚହଳି ଲାଗଇ ସେଠାରେ
ମେଳନ ପଡ଼ିଆ ହସେ ।

ଦୋଳ ପରେ ପରେ ଆସଇ ହୋଲି
ନାଲି, ନେଳି ରଙ୍ଗ ପାଣିରେ ଗୋଳି
ହାତେ ପିଚକାରି ଧରି
ରଙ୍ଗ ବୋଳାବୋଳି ହୁଅନ୍ତି ସଭିଏଁ
ମନରେ ସରାଗ ଭରି ।

କେତେ ଖୁସି ଦୋଳ ପରବ ଦିଏ
ରାଧାକୃଷ୍ଣଙ୍କର ଯାତରା ଇଏ
ବରଷକେ ଆସେ ଥରେ
ଏକତା ଡୋରିରେ ସବୁ ମଣିଷଙ୍କୁ
ଏକଜୁଟ ସିଏ କରେ ।

*ଶଶାଙ୍କ ନିବାସ, ବାଲିଘାଟ, ପୁରୀ-୨*

---

ତା' ପରଦିନ ପ୍ରଫେସର ଆସି ପଚରାଉଚରା କଲେ ଏବଂ କହିଲେ, "ସବୁ ତ ଭଲ ଅଛି, ତୁମେ ଏପରି ମୁହଁଟାକୁ କରୁଛ କାହିଁକି ?" "ପାନ ଖଣ୍ଡେ ଖାଇବାକୁ ଇଚ୍ଛା ହେଉଛି । ସେମାନେ ମନା କରୁଛନ୍ତି ।" ବୋଲି ସେ କହିଲେ । "କିଏ ମନା କରୁଛି ?" ଏପରି କହି ପ୍ରଫେସର ତାଙ୍କ ପକେଟ୍‌ରୁ ପାନ ଖଣ୍ଡେ ବାହାର କରି ହସିଦେଇ କହିଲେ, "ନିଅ, ଶୀଘ୍ର ପାନ ଖଣ୍ଡକ ପାଟିରେ ଜାକିଦେଲ ।" ଅର୍ଥାତ୍ ପାନ ଖାଇଲାବାଲା ପାନର ମର୍ଯ୍ୟାଦା ଜାଣେ ।

*ରାଜାବଗିଚ୍ଛ, କଟକ-୯*

# ଈଶ୍ୱରଙ୍କ ଇସାରା

ଶ୍ରୀ ନଗେନ୍ଦ୍ର ନାଥ ପଟ୍ଟନାୟକ

କୌଣସି ଏକ ଗାଁ'ରେ ରହୁଥିଲେ ଜଣେ ଭକ୍ତ । ଗାଆଁ ସାରା ଲୋକଙ୍କ ବିଶ୍ୱାସ ତାଙ୍କୁ ଈଶ୍ୱର ଦର୍ଶନ ଦେଉଛନ୍ତି । ଦିନେ ଗାଆଁରେ ଭୟଙ୍କର ବନ୍ୟା ଅସିଲା । ଭକ୍ତଙ୍କ ପ୍ରାଣ ବଞ୍ଚାଇବାକୁ ଚାହୁଁଥିବା ସେ ଗାଆଁର ଲୋକେ ତାଙ୍କୁ ସାଙ୍ଗରେ ନେଇଯିବାକୁ  ଆସି ସେଠି ପହଞ୍ଚିଲେ । ଆଉ କହିଲେ– ଆପଣ ବି ଆମ ସାଙ୍ଗରେ ଏଇ ଗାଆଁ ଛାଡ଼ି ପଳେଇଯିବାକୁ ପ୍ରସ୍ତୁତ ହୋଇ ଯାଆନ୍ତୁ ।

ଏଥର ଭକ୍ତଙ୍କର ମନରେ ଭାବାନ୍ତର ଆସିଲା । ସେ ଭାବିଲେ– ମୁଁ ଯଦି ଗାଆଁ ଛାଡ଼ି ପଳାଇଯାଏ, ତାହାହେଲେ ଲୋକେ ଭାବିବେ ମୋର ଈଶ୍ୱରଙ୍କ ଉପରେ ଆଉ ଭରସା ନାହିଁ । ତେଣୁ ସେ ନିଜ ସାମନାରେ ଥିବା ଲୋକଙ୍କୁ କହିଲେ, "ମୋତେ କେବଳ ଉପରବାଲା ହିଁ ରକ୍ଷା କରିବ । ଏବେ ତୁମେ ଏଠୁ ଚାଲିଯାଅ ।'' ବେଳକୁ ବେଳ ବନ୍ୟାପାଣି ବଢ଼ିବାରୁ କିଛି ଲୋକ ଡଙ୍ଗା ନେଇ ଆସିଲେ ତାଙ୍କୁ ନିରାପଦ ଜାଗାକୁ ନେବାକୁ । କହିଲେ– ଆମେ ଆପଣଙ୍କୁ ଏଠାରୁ ନେଇଯିବାକୁ ଆସିଛୁ । ଭକ୍ତଜଣଙ୍କ ପୁଣି ସେଇ ଗୋଟିଏ କଥା–ମୋତେ ଉପରବାଲା ହିଁ ରକ୍ଷା କରିବେ । ଆପଣମାନେ ଏଠୁ ପଳାନ୍ତୁ । ଭକ୍ତଙ୍କ ଧର୍ମସ୍ଥଳୀରେ ଯେତେବେଳେ ବନ୍ୟାପାଣି ପ୍ରବେଶ କଲା, ସେ ପାଣିରେ ବୁଡ଼ି ଉବୁଟୁବୁ ହେବାକୁ ଲାଗିଲେ । ସେତେବେଳେ ତାଙ୍କ ଜୀବନ ବଞ୍ଚାଇବାକୁ ହେଲିକପ୍ଟର ଆସି ପହଞ୍ଚିଲା ସେଠାରେ । ସେଇଠୁ ତାଙ୍କ ଆଡ଼କୁ ରସିଟିଏ ଫିଙ୍ଗିଲା ହେଲିକପ୍ଟର । ଈଶ୍ୱରଙ୍କୁ ବିଶ୍ୱାସ ରଖି ଅନ୍ଧବିଶ୍ୱାସରେ ବୁଡ଼ି ରହିଥିବା ଭକ୍ତଟିର ତୁଣ୍ଡରେ ପୁଣି ସେହି କଥା–କେବଳ ଉପରବାଲା ଉପରେ ମୋର ଭରସା । ସିଏ ହିଁ ମୋତେ ରକ୍ଷା କରିବେ; କିନ୍ତୁ ଏ ଭିତରେ ବନ୍ୟା ପାଣି ତାଙ୍କ ଉପରେ ମାଡ଼ି ଆସିଲାଣି । ବଞ୍ଚିବାର ଆଶା ମଉଳିଗଲାଣି । ଶେଷରେ ଏମିତି ହେଲା ଭକ୍ତଜଣଙ୍କର ମୃତ୍ୟୁ ଘଟିଲା ।

ଆରପାରିରେ ପହଞ୍ଚିଲା ପରେ ଭକ୍ତଜଣଙ୍କ ଈଶ୍ୱରଙ୍କୁ ଭେଟି କହିଲେ, "ମୁଁ ଆପଣଙ୍କ ଉପରେ ଭରସା ରଖି ବସି ପଡ଼ିଲି, ମାତ୍ର ମୋତେ ଏମିତି ଭାବରେ ମରିବାକୁ ପଡ଼ିଲା କାହିଁକି ?" ତା'ପରେ ଈଶ୍ୱର ତାଙ୍କୁ କହିଲେ, "ମୁଁ ତୁମକୁ ସାହାଯ୍ୟ କରିବାକୁ ସେଠାକୁ ଯାଇଥିଲି, ହେଲେ ତୁମେ ମୋ ଇସାରାକୁ ବୁଝି ପାରିଲ ନାହିଁ ।'' ଏତିକି ଶୁଣିବା କ୍ଷଣି ଭକ୍ତଜଣଙ୍କ ଚିହିଙ୍କି ଉଠିଲେ । ତହୁଁ ଈଶ୍ୱର କହିଲେ–ମୁଁ ତୁମକୁ ବଞ୍ଚାଇବା ପାଇଁ ଡଙ୍ଗା ନେଇ ଆସିଥିଲି, ପୁଣି ହେଲିକପ୍ଟର ନେଇ ଆସିଲି; ତଥାପି ତୁମେ ନିଜକୁ ଅନ୍ଧବିଶ୍ୱାସରେ ବୁଡ଼ାଇ ରଖିଲ । ତୁମେ ଖୋଦ କିଛି କରିବାକୁ ଚାହିଁଲ ନାହିଁ । କେବଳ ମୋ ଉପରେ ଭରସା ରଖି ଅଟକିଗଲ । ଏଇ ଦୁଇଟି ରୂପରେ ତୁମ ପ୍ରାଣ ବଞ୍ଚାଇବା ପାଇଁ ମୁଁ ଆସିଥିଲି; ଅଥଚ ତୁମେ ମୋତେ ଚିହ୍ନିପାରିଲ ନାହିଁ ।

ଏକଥା ଶୁଣି ଭକ୍ତଟି ସବୁ କଥା ବୁଝିପାରିଲେ । ତାଙ୍କ ମନରେ ପଶିଲା ଏଇ ଅଧ୍ୟାତ୍ମ ଦୁନିଆ ଏବଂ ଈଶ୍ୱରଙ୍କ ସଂସାର କେବଳ ତାଙ୍କର ଇସାରାରେ ହିଁ ଚାଲୁଛି ।

*ଜିଲ୍ଲା କୋଷାଧ୍ୟକ୍ଷ ଅଧିକାରୀ, ପୁରୀ*

# ବୁଢ଼ା ସମ୍ରାଟଙ୍କ ଦାଢ଼ି ବଢ଼ିଚି

ଡ ଶୁଭେଂଦ୍ର ମୋହନ ଶ୍ରୀ ଚଂଦନ ସିଂହ

ଭଲ ଲୋକକଂର ବି ବହୁ ବଇରି । ସେମାନଂକୁ ଈର୍ଷାକରଂତି ଅନ୍ୟମାନେ । ବିପଦରେ ପକାନ୍ତି । ସେମାନଂକ ଲାଗି ଖୋଳଂତି ଗାତ । ସୁବିଧା ଦେଖି ଠେଲିଦେବେ ସେ ଗାତକୁ । ପୋତି ମାରିଦେବାର ସୁବିଧା ଉଂଡୁଥାଆଂତି ।

ସେମ୍‌ତି ଥରେ । ସେବେଳେ ଭାରତରେ ମୁଗଲ ରାଜୁତି ଚାଲୁଥାଏ । ଶାହା ନ ଶାହ ଆକବର ଥାଆଂତି ଗାଦିରେ । ତାଂକୁ ଖିଅର କରୁଥାଏ ଜଣେ ବାରିକ । କହିଲା– ହଜୁର, ଆପଣଂକ ଅଜବାଜାଁ ଅନେକ ଦିନରୁ ସ୍ୱର୍ଗବାସୀ ହେଲେଣି । ସେଠି କେମ୍‌ତି ରହୁଚଂତି ! ଭଲରେ କି ମନ୍ଦରେ ! ଆପଣ ସେ କଥା ତ ବୁଝୁନାହାନ୍ତି ! କି ବୁଝିବା ଚେଷ୍ଟା ବି କରୁନାହାନ୍ତି !



''ମଲାଲୋକ ତ ସ୍ୱର୍ଗରେ ରହଂତି । ସେଠା ଖବର ଆମେ ପୃଥିବୀବାସୀ ଜାଣିବା ସହଜ ନୁହେଁ ?''

''ନାଇଁ ହଜୁର ! ଜାଣିହବ । ବ୍ରାହ୍ମଣମାନେ ମନ୍ତ୍ରତନ୍ତ୍ର କରି ସ୍ୱର୍ଗକୁ ଯାଇପାରନ୍ତି । ସେମ୍‌ତି ବ୍ରାହ୍ମଣ ଜଣକୁ ସ୍ୱର୍ଗକୁ ପଠେଇଲେ ! ଯେ ତ ହଜୁରଂକ ବାଁ ହାତର ଖେଳ ।''

''ହେଲେ ସେମ୍‌ତି କୋଉ ପାରିବାଲୋକ ଅଛି ?''

''ଅଛନ୍ତି ହଜୁର ! ଆପଣଙ୍କ ପାଖରେ ଅଛନ୍ତି !''

''ସତେ ? କିଏ ସେ ?

''ବୀରବଲଜୀ ହଜୁର ! ସିଏ ବି ବଡ଼ ଚାଲାକ । ଅବ୍ବା ହଜୁରଂକ ସବୁ ଭଲମନ୍ଦ ପଚାରିଆସିବେ ।''

ଆକବର ଟିକେ ଚିନ୍ତା କଲେ । କହିଲେ, ''ହଉ, ଦେଖିବା ! ବୀରବଲ୍‌ଙ୍କୁ ବେଗି ଖବର ଦିଅ ।''

ଖବର ପାଇଲେ ବୀରବଲ । ତୁରଂତ ସମ୍ରାଟଙ୍କ ସାମ୍ନାରେ ହାଜର ହୋଇଗଲେ । ଆକ୍‌ବର ବୀରବଲ୍‌ଙ୍କୁ କହିଲେ ''ତିଆରି ହୁଅ ବୀରବଲ୍ । ସ୍ୱର୍ଗକୁ ଯାଅ । ଅବ୍‌ବା ହଜୁରଂକ ସୁଖଦୁଃଖ ବୁଝିଆସିବ ।''

ରାଜି ହେଲେ ବୀରବଲ୍ । କୁର୍ନିସ୍ ଜଣେଇଲେ । ବାହାରିଗଲେ, ଖବର ନେଇ ଜାଣିଲେ– ଏକଥାରେ ଗୋଟେ କେଁ ଅଛି । ତାଂକର ତ ବହୁତ ବୁଦ୍ଧି । ସେ ମୁଣ୍ଡ ଖେଲେଇଲେ । ଏକଥାକୁ ମୁକାବିଲା କରିବାକୁ ଗୋଟେ ବଢ଼ିଆ ଯୋଜନା କଲେ ।

ପ୍ରାୟେ ମାସେ ଚାଲିଗଲା । ଦିଲ୍ଲୀରେ ରାଷ୍ଟ୍ର ହେଇଗଲା, ବୀରବଲ ମରିଗଲେ । ତାଂକର ଶବ ସତ୍‌କାର ହବ । ସେ ନିମନ୍ତେ ଜୁଇ ତିଆରି ହେଲା । ବୀରବଲ୍ ସେଥିରେ ଶୋଇଲେ । ନିଆଁ ଲାଗିଲା । ଜୁଇରେ କାଠ ସଙ୍ଗେ ବହୁତ ଘଷି ପଡ଼ିଥାଏ । ଧୂଆଁ ପ୍ରବଳ । ଦେଖଣାହାରିଏ ବାଇବିଛ ହୋଇ ପଳେଇଲେ । ସମସ୍ତଙ୍କ ମନ ଦୁଃଖ । ସବୁବେଳେ ହସି ହସାଉଥିବା ଲୋକଟି ଚାଲିଗଲେ । ଲୋକେ ଫୁସ୍‌ଫାସ୍ ହେଲେ, ଯାଇଛନ୍ତି ସ୍ୱର୍ଗ ଭୁବନ । ଶାହନଶାହଂକ ଅବ୍‌ବା ହଜୁରଂକ ଖବର ଆଣିବେ । ବାଃ ରେ ବୀରବଲ୍ !

ଈର୍ଷାଳୁ ଲୋକେ ହେଂଡି ମାରିଲେ । ଭୋଜିଭାତ କଲେ । ମିଠେଇ ବାଣ୍ଟିଲେ । ଓହୋରେ ! କଣ୍ଟାଟେ ଗଲା ।

ସମ୍ରାଟ ତାକୁ ବେଶି ଖୋଜୁଥିଲେ । ଏମାନଂକୁ ଅଣଦେଖା କରୁଥିଲେ । ହଁ ରେ ପୁଅ ! ପା' ଏଥର ।

ଏମିତି ଛ'ମାସ ପରେ । ହଠାତ୍ ଗୁଜବ ଉଠିଲା । ଆକବର ବି ଶୁଣିଲେ । ବୀରବଲ୍ ଫେରିଆସିଛନ୍ତି । ଆକବରଂକୁ ଲମ୍ବା ସାଲ୍ୟୁଟ ମାରିଲେ ସେ । ଚିରା ଦଦରା ପୋଷାକ । ମୁଣ୍ଡରେ ଝଂପୁରା ବାଳ । ଲଂବା ଦାଢ଼ି, ନିଶ ବି କିଛି କମ୍ ବଢ଼ିନି ।

ବୀରବଲ୍ଙ୍କୁ ଦେଖି ସମ୍ରାଟ ବହୁତ ଖୁସି । ଏଇ ଯେ ତାଂକୁ ମଜାମଜା କଥା ଶୁଣାଉଥିଲେ । ତାଂକ ବିନା ଜୀବନଟା ଅଲଣା ଲାଗୁଥିଲା । ଆଜି ସେ ଆସିଚଂତି । ଫେରିଚଂତି ଅବ୍‌ବାଜାନ୍‌ଙ୍କ ଖବର ନେଇ ।

''ଯେ କି ବେଶ ବୀର୍‌ବଲ ! ଲୁଗାପଟା, ନିଶଦାଢ଼ି !''

''ହଜୁର ସ୍ୱର୍ଗପୁରୀ ଯାଇଥିଲି, ଗୁଡ଼େଦିନ ଲାଗିଲା । ବଡ଼ ଲଂବା ବାଟ ନା ! ଅଧିକ ପୋଷାକ ନେଇ ନଥିଲି । ଯାହା ପିନ୍ଧିଥିଲି, ସବୁ ଚିରି ଫାଟିଗଲା । ସ୍ୱର୍ଗରେ ବାରିକ ନାହିଁ । ତେଣୁ ମୋର ନିଶଦାଢ଼ି ବଢ଼ିଗଲା । ଆଉ ଆପଣଂକ ଅବ୍ବାଜାନ୍ ଖୁବ୍ ଖୁସିରେ ଅଛନ୍ତି । ହେଲେ, ତାଂକର ନିଶ, ଦାଢ଼ି, କେଶ ବଢ଼ି ଜଂଗଲ ହେଇଛି । ସେଥିପାଇଁ ବଡ଼ ଦୁଃଖ କରୁଥିଲେ । ଶୀଘ୍ର ଆପଣଂକ ବାରିକକୁ ସ୍ୱର୍ଗକୁ ପଠାଂତୁ । ନହେଲେ, ହଜୁରଂକ ଅବ୍‌ବାଜାନ୍ ବଡ଼ କଷ୍ଟ ପାଇବେ । ହାନସ୍ତା ହେବେ ।''

ବୁଝିଗଲେ ସମ୍ରାଟ । ସୈନିକମାନେ ଇସାରାଟା ଜାଣିଗଲେ । ଟାଣିଆଣିଲେ ବାରିକକୁ ।

''ଯା' ଏବେ ! ବୁଢ଼ା ଶାହାନଶାହ ତୋତେ ଖୋଜୁଛନ୍ତି । ବଢ଼ିଛି ତାଂକର ଦାଢ଼ିନିଶ ।''

''ହଜୁର ମା' ବାପ୍ ! ଦୋଷ କ୍ଷମା ହେଲେ କହିବି । ମୋ କଥା ଆଗେ ଶୁଣିବା ହୁଅନ୍ତୁ । ତା'ପରେ ମୁଁ ସ୍ୱର୍ଗକୁ ଯିବି ।'' ବାରିକଟି ଏବେ ଜାଣିଲା ତା'ର ବାଣ ଫେରିଆସିଛି ତା' ପାଖକୁ, ଯିବ ଏଥର ମୁଣ୍ଡ । ସେ ଡରରେ ଛାନିଆ ।

ସମ୍ରାଟ ଏଥର ତା କଥା ଶୁଣିଲେ । ଦରବାରର କେତେକ ଖଳ ଲୋକଂକ ଯେ ଚକ୍ରାଂତ । ଈର୍ଷାରେ ସେମାନେ ଯା'କୁ ହାତକରି ବୀରବଲଂକୁ ମରେଇବା ଥିଲା ସେମାନଂକ ଲକ୍ଷ୍ୟ ।

ତା'ପରେ ସେ ଚାହିଁଲେ ବୀରବଲ୍‌ଙ୍କୁ ।

ବୀରବଲ୍ କହିଲେ, ''ଈର୍ଷାଳୁଂକ ଚକ୍ରାଂତର ଗଂଧ ମୁଁ ପାଇଥିଲି ଜାହାଁପନା । ମଶାଣି ଭୂଇଁରେ ସୁଡ଼ଂଗଟେ ତିଆରି କରେଇଲି । ମିଛରେ ମୋ' ଶବ ପୋଡ଼ାହେଲା । ସଭିଏଁ ଜାଣିଲେ ମୁଁ ଏ ପୃଥିବୀରୁ ଗଲି । ସୁଡ଼ଂଗ ବାଟରେ ଯାଇ ରହିଲି ଗୋପନରେ । ବାଧ୍ୟ ହେଲି ଦାଢ଼ି,ନିଶ, କେଶ ବଢ଼ାଇବାକୁ । ଆଉ ଆପଣଂକୁ ଜଣେଇବା ଲାଗି ମରିବାଠୁ ଫେରିବା ଯାଏ ଗୁଜବ ରଟେଇଲି ।''

''ମୁଁ ବି ଜାଣିଥିଲି ବୀରବଲ, ସ୍ୱର୍ଗକୁ କେହି ସିଧା ଯାଏନି । ତେଣୁ ମୁଁ ତମକୁ ପରଖିବାକୁ କହିଲି । ଜାଣିଥିଲି, ତମେ ଏ ବ୍ୟୂହ ଭେଦିପାରିବ ଆଉ ପ୍ରକୃତ ସତଟା ବାହାରି ଆସିବ । ଏଥର ଆମେ ଜାଣିପାରିଲେ ଆମର ଶତ୍ରୁମାନଙ୍କୁ । ଏବେ ମୋ' କାମ ଶତ୍ରୁମାନଂକୁ ଦଂଡ ଦେବା ।''

ବାରିକଠାରୁ ଆକବର୍ ଚକ୍ରାନ୍ତକାରୀମାନଙ୍କ ନାଁ ଜାଣିପାରିଲେ । ଖୋଲା ଦରବାରରେ ସେମାନଙ୍କୁ ପଚରାଗଲା । ସେମାନେ ନିଜ ନିଜର ଦୋଷ ମାନିଲେ । ଶାହନଶାହ ସେମାନଂକୁ ଆଜୀବନ କରାଦଂଡ ଦେଲେ ! ବାରିକକୁ ବି ସେ ଦଂଡରେ ସାମିଲ କରାଗଲା । ବୀରବଲ୍‌ଙ୍କୁ ବହୁ ଧନରତ୍ନ ଦେଇ ସଂବର୍ଧନା ଜଣେଇଲେ । ତାଂକର ବୁଦ୍ଧିକି ବହୁତ ପ୍ରଶଂସା କଲେ ।

*ଯଦୁମଣିପାଟଣା, ରେଢ଼ାଖୋଲ, ସମ୍ବଲପୁର-୭୬୮୧୦୬*

# ବୃକ୍ଷ ଦେବତା

ଶ୍ରୀମତୀ କାଞ୍ଚନବାଳା ମହାନ୍ତି

ରାଜାଜୀ ଦଶହରା ଛୁଟିରେ ତା' ବାପାବୋଉଙ୍କ ସାଙ୍ଗରେ ତାଙ୍କ ଗାଆଁକୁ ବୁଲିଯାଇଥିଲା । ସୂର୍ଯ୍ୟ ଉଠିବା ପୂର୍ବରୁ ତା' ଜେଜେମା ଗାଧୋଇସାରି ଚଉରାରେ ପାଣି ଦିଅନ୍ତି । ସୂର୍ଯ୍ୟଙ୍କୁ ପ୍ରଣାମ କରନ୍ତି । ଚଉରାରେ ଥିବା ତୁଳସୀ ଗଛରୁ ଗୋଟିଏ ପତ୍ର ଛିଣ୍ଡାଇ ଖାଆନ୍ତି । ପାଣିଟିକେ ପିଅନ୍ତି । ତା'ପରେ ଚଉରା ପାଖରେ ମୁଣ୍ଡିଆମାରି ଗୁଣୁଗୁଣୁ ହୋଇ କୁହନ୍ତି, "ମା' ବୃନ୍ଦାବତୀ ! ଏ ପରିବାରକୁ ଆପଦବିପଦରୁ ରକ୍ଷା କରିବୁ । ଘଣ୍ଟ ଘୋଡ଼ାଇ ରଖିଥିବୁ ଲୋ ମା' ।" ଚଉରାମୂଳରୁ ମାଟି ଟିକେ ଆଣି ସେ ନାତି ରାଜାଜୀ ମୁଣ୍ଡରେ ଲଗାଇଦେଲେ । ରାଜାଜୀ ଛୋଟ ପିଲା । ପଚାରିଲା, "ମା' ଗଛକୁ କାହିଁକି ପୂଜା କରୁଛ ?"

ଜେଜେମା' ନାତି ରାଜାଜୀର କଥାଶୁଣି ହସିଦେଇ କହିଲେ, "ଗଛ ଆମରି ଠାକୁର । ସେ ଆମକୁ ରକ୍ଷା କରୁଛନ୍ତି । ଥଣ୍ଡା ହେଲେ ତୁଳସୀପତ୍ର ମହୁ ମିଶାଇ ଖାଇଲେ ଥଣ୍ଡା କମିଯାଏ । ଜ୍ୱର ଭଲ ହୋଇଯାଏ । କଫ ଦୋଷ କଟିଯାଏ, ଦେହ ଭଲ ରହେ । ମନେରଖିବା ଶକ୍ତି ବଢ଼ାଏ ।"

"ଖଳାରେ ଥିବା ବେଲଗଛମୂଳେ କାହିଁକି ପାଣିଦେଲ, ମା' ?'' ମା' ନାତିକୁ ଟିକେ ଗେଲ କରିଦେଇ କହିଲେ ''ବୁଝିଲୁ । ବେଲଗଛର ତିନୋଟି ପତ୍ରକୁ ଗୋଲମରିଚ ଦୁଇଟି ସହ ବାଟି ପିଇଲେ ପେଟ ଗୋଳମାଳ କମିଯାଏ । ଭଲ ହଜମ ହୁଏ । କଷି ବେଲକୁ ପୋଡ଼ି ଖାଇଲେ ନାଳ ଝାଡ଼ା ଭଲହୋଇଯାଏ । ଖରାଦିନେ ପାଚିଲା ବେଳକୁ ପଣା କରି ପିଅନ୍ତି । ତା' ଦ୍ୱାରା ପେଟ ଥଣ୍ଡା ରହେ ।

ନଡ଼ିଆ, ଲିମ୍ବ, ଲେମ୍ବୁ ଓ ଅନ୍ୟାନ୍ୟ ଗଛ ଆମର ବହୁ ଉପକାର କରନ୍ତି । ଲିମ୍ବପତ୍ର ଭାରି ପିତା; କିନ୍ତୁ ତାକୁ ଖାଇଲେ କାଛୁ, ବିଇଞ୍ଚ ପ୍ରଭୃତି ଚର୍ମରୋଗ ଭଲହୋଇଯାଏ । ମଧୁମେହ ରୋଗରୁ ରକ୍ଷା ମିଳେ ।

ଗୋଟିଏ କଥା ଶୁଣୁ– ଚରକ, ଶୁଶ୍ରୁତ ପୁରୁଣା ଚିକିତ୍ସକ । ସେମାନେ ଏହି ଔଷଧୀୟ ଗଛମାନଙ୍କ ବିଷୟରେ କହିଛନ୍ତି, ପ୍ରକୃତିର ଦାନ ଏଇ ଗଛମାନେ ଆମର ବହୁ ଉପକାର କରୁଛନ୍ତି । ଆମେ ସେମାନଙ୍କ ପାଖରୁ ଖାଦ୍ୟ, ବସ୍ତ୍ର ଓ ଜୀବନରକ୍ଷା ଔଷଧ ପାଉ । ଘର ପାଇଁ ଏଇ ଦରକାରୀ ବୃକ୍ଷ ଦେବତାମାନେ ଆମର ମଙ୍ଗଳ କରିଥା'ନ୍ତି ।

ଗଛ ଯୋଗୁଁ ଆମେ ଜୀବନରକ୍ଷାକାରୀ ଅମ୍ଳଜାନ ପାଉ । ଅମ୍ଳଜାନ ବାୟୁମଣ୍ଡଳରୁ ରୋଗ ଜୀବାଣୁକୁ ନଷ୍ଟ କରିଦିଏ । ପରିବେଶକୁ ପରିଷ୍କାର କରି ପ୍ରାଣୀମାନଙ୍କୁ

ରକ୍ଷା କରେ । ସମୁଦ୍ର କୂଳରେ ଥିବା ବୃକ୍ଷମାନେ ଚେର ଛନ୍ଦାଛନ୍ଦି ହୋଇ ଜୁଆର, ବାତ୍ୟା କବଳରୁ ଆମକୁ ରକ୍ଷା କରନ୍ତି । ଜଙ୍ଗଲଜାତ ଦ୍ରବ୍ୟ ମହୁ, ଝୁଣା, ଲାଖ, କାଠ ଓ ଚେରମୂଳିକା ଇତ୍ୟାଦି ଆମକୁ ସୁସ୍ଥ ଜୀବନ ଦାନ କରେ । ଜଙ୍ଗଲରୁ ଗଛ କଟାଯିବା ଦ୍ୱାରା ପାହାଡ଼ପର୍ବତ ସବୁ ନଷ୍ଟ ହେଉଛି । ପାହାଡ଼ର ସେହି ଭଙ୍ଗା ଅଂଶ ଗାଁଅଁ ଉପରେ ପଡୁଛି । ପାହାଡ଼ ତଳର ବାସିନ୍ଦାମାନେ ଅସମୟରେ ଜୀବନ ହରାଉଛନ୍ତି । ଜଙ୍ଗଲ କ୍ଷୟ ଯୋଗୁ ବର୍ଷା ଠିକ୍ ସମୟରେ ହେଉନାହିଁ । ମରୁଡ଼ି ହେଉଛି । ଖାଦ୍ୟ ଅଭାବ ଯୋଗୁ ଚାଷୀମାନେ କଷ୍ଟ ପାଉଛନ୍ତି ।

"ମା ! ଜଙ୍ଗଲ କେମିତି ବର୍ଷା କରାଏ ?" – ଧନରେ ! ଗଛ ତା' ଚେର ସାହାଯ୍ୟରେ ମାଟିରୁ ପାଣି ଆଣି ପତ୍ରକୁ ଯୋଗାଏ । ପତ୍ରରେ ଥିବା ସବୁଜକଣା ସୂର୍ଯ୍ୟଙ୍କ ଉତ୍ତାପ ଓ ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ବାଷ୍ପ ସଂଗ୍ରହ କରି ତା'ଦେହରେ ଥିବା ସବୁଜକଣା ସାହାଯ୍ୟରେ ପତ୍ର ଖାଦ୍ୟ ତିଆରି କରେ । ବଳକା ଜଳକୁ ବାଷ୍ପ ଆକାରରେ ବାୟୁମଣ୍ଡଳକୁ ଛାଡ଼ିଦିଏ । ସେହି ଜଳୀୟବାଷ୍ପ ମେଘ ସୃଷ୍ଟି କରେ । ଉଦ୍ଭିଦକୁ ଜୀବନ ଦିଏ । ପରିବେଶକୁ ରକ୍ଷା କରେ । ପରିବେଶ ଦୂଷିତ ହେବା ଯୋଗୁ ଅନେକ ଜୀବଜନ୍ତୁ ମରି ହଜିଗଲେଣି । ବିଭିନ୍ନ ପ୍ରକାର ଅଜଣା ରୋଗ ମାଡ଼ିଆସୁଛି । ପ୍ରାଣୀମାନେ ରୋଗର ଶିକାର ହୋଇ କଷ୍ଟ ପାଉଛନ୍ତି ।

ଆଗେ ରାସ୍ତାକଡ଼ରେ ବହୁତ ଗଛ ଥିଲା । ବାଟୋଇମାନେ ଚାଲିଚାଲି ଗଲାବେଳେ ଗଛମୂଳରେ ବସି ଆରାମ୍ ଅନୁଭବ କରନ୍ତି । ଗଛମୂଳ ଥଣ୍ଡା ଲାଗେ । ଜଙ୍ଗଲ ନଷ୍ଟ ଓ ବାଟକଡ଼ରୁ ଗଛ କାଟି ନେଉଥିବା ଯୋଗୁ ସୂର୍ଯ୍ୟଙ୍କ ଉତ୍ତାପ ବଢ଼ିଯାଉଛି । ଲୋକମାନେ ଅଂଶୁଘାତରେ ମରୁଛନ୍ତି । କାଳକାରଖାନାରୁ ବାହାରୁଥିବା ଧୂଳି, ପାଉଁଶ ଓ ଧୂଆଁ ବାୟୁମଣ୍ଡଳକୁ ଦୂଷିତ କରୁଛି । ପାଖ ବିଲ ଉପରେ ପାଉଁଶ ପଡ଼ିବା ଦ୍ୱାରା ଫସଲ ହୋଇପାରୁନାହିଁ । ବାୟୁମଣ୍ଡଳରେ ଅଙ୍ଗାରକାମ୍ଳର ପରିମାଣ ବଢ଼ିଯାଉଛି । ଜଳସ୍ତର ଶୁଖିଯାଉଛି । ସେଥିପାଇଁ ସରକାରଙ୍କ ତରଫରୁ ରାସ୍ତାକଡ଼ରେ ଗଛ ଲଗାଯାଉଛି ।

ବନମହୋତ୍ସବ ପାଳନ କରାଯାଉଛି । ଗଛ ନ କାଟିବା ପାଇଁ ଆଇନ୍ ତିଆରି କରାଯାଉଛି । ଜେଜେମାନେ ନାତିନାତୁଣୀମାନଙ୍କୁ ଜନ୍ମଦିନରେ ବୃକ୍ଷ ଲଗାଇବା ପାଇଁ ପ୍ରେରଣା ଦେଉଛନ୍ତି । ସରକାର କୋଟି କୋଟି ଟଙ୍କା ଖର୍ଚ୍ଚ କରି ସମୁଦ୍ର ଉପକୂଳରେ କୃତ୍ରିମ ଜଙ୍ଗଲ ସୃଷ୍ଟି କରି ଝାଉଁ, କାଜୁ ଓ ଆକାଶିଆ ଗଛ ଲଗାଉଛନ୍ତି । ଏହାଦ୍ୱାରା ଜୁଆର ଓ ବାତ୍ୟା ସ୍ଥଳଭାଗକୁ ସହଜରେ ପଶିପାରିବ ନାହିଁ ।

"ଆରେ ବାପା ! ତୁମ ଇତିହାସ ବହିରେ ଆକବରଙ୍କ ବିଷୟରେ ପଢ଼ିଥିବୁ ? ଗଙ୍ଗା ପାଣି ଶୁଦ୍ଧ ବୋଲି ସେ ଗଙ୍ଗାରୁ ପାଣି ଅଣାଇ ରୋଷେଇ କାର୍ଯ୍ୟରେ ବ୍ୟବହାର କରିବା ପାଇଁ ରୋଷେୟାମାନଙ୍କୁ କହୁଥିଲେ ।"

"ଜେଜିମା ! ସେ ଗଙ୍ଗା ପାଣି ଆଣିବା ପାଇଁ କାହିଁକି କହୁଥିଲେ ? ଆହୁରି କେତେ ନଦୀ ତ ଅଛି ।"

## ଦୋଷ ଦେଇ କିଛି ଲାଭ ନାହିଁ

ଶ୍ରୀ ରବୀନ୍ଦ୍ର ପ୍ରସାଦ ଚାନ୍ଦ

ଆମେ ଠିଆ ହେଲେ ସମାଧାନ ହେବ
ସମାଜକୁ ଦୋଷ ଦିଅ ନାହିଁ
ବାଲୁଙ୍ଗା ଗଛକୁ ଓପାଡ଼ି ଫିଙ୍ଗିଲେ
ସୁନାର ଫସଲ ମିଳିବ ଯାଇ ।
ଛାଡ଼ିଦିଅ ତାଙ୍କୁ ନ ମାନୁଛି ଯିଏ
ଭୋଗିଯାଉ ସିଏ କର୍ମଫଳ
ଦୂରେଇ ରୁହନ୍ତୁ ମାତାଲ ପାଖରୁ
ମିଳିବ ଦେହରେ ନୂଆ ବଳ ।
ଆମେ ଦାୟୀ ଅଟୁ ଯୁବପିଢ଼ି ପାଇଁ
ଆମେ କରିନାହୁଁ କଟକଣା
ଲଗାମ ଛାଡ଼ିଲେ ମନଟା ଧାଇଁବ
ମାନିବନି କିଛି ହେବ ବଣା ।
ଛେକି ଦିଅ ବାଟ ପଶିବା ଆଗରୁ
ସଫା କରିଦିଅ ଅସନାକୁ
ପରିଷ୍କାର ହେଲେ ମିଳିବ ଯଥେଷ୍ଟ
୫ଟି ପାଣ୍ଡବ ଶାସନକୁ ।
ଜ୍ଞାନ କୌଶଳର ଅସଲ ରହସ୍ୟ
ରହିଛି କେବଳ ନିଃସ୍ୱାର୍ଥରେ
ପବିତ୍ରତା ଥିଲେ ଆପେ ମିଳିଯିବ
ସମାଧାନ ରାସ୍ତା ସାମନାରେ ।

*ଆନନ୍ଦପୁର, ଚାନ୍ଦସାହି, କେନ୍ଦୁଝର–୭୫୮୦୨୧*

---

"ହଁ ରେ ବାଇଆ । ପୃଥିବୀରେ ହିମାଳୟ ବଡ଼ ପର୍ବତ । ଏଇ ଗଙ୍ଗାନଦୀ ସେଥିରୁ ବାହାରିଛି । ସେହି ପର୍ବତରେ ଅନେକ ଔଷଧୀୟ ଗଛ ଅଛି । ସେହି ସବୁ ଗଛ ମୂଳ ଦେଇ ଗଙ୍ଗାନଦୀ ବହିଆସିଛି, ସେଥିପାଇଁ ତାହା ଭଲ । ଏବେ କିନ୍ତୁ ନଦୀକୂଳରେ ଥିବା କାରଖାନାମାନଙ୍କରୁ ମଇଳା ପଦାର୍ଥ ନଦୀରେ ମିଶୁଛି । ତେଣୁ ପାଣି ଦୂଷିତ ହୋଇଗଲାଣି ।"

"ବୁଝିଲୁ ରାଜାଜୀ ! ଆମର ବିଶ୍ୱାସ ଠାକୁର ଠାକୁରାଣୀମାନେ ଆମର ଉପକାର କରୁଛନ୍ତି । ଠିକ୍ ସେମିତି ଗଛମାନେ ଆମର ଉପକାର କରୁଛନ୍ତି । ତେଣୁ ଆମେ ବୃକ୍ଷକୁ ଦେବତା ରୂପେ ମାନୁଛୁ ଓ ପୂଜା କରୁଛୁ ।"

ଗଛ ଲଗାଇବା ଗୋଟିଏ ମହତ କାର୍ଯ୍ୟ । ସମସ୍ତେ ମନେରଖିବା କଥା– "ଗଛ ଲଗାଅ, ଦେଶ ବଞ୍ଚାଅ ।"

*ଗୋପାଳପୁର, ନିଶ୍ଚିନ୍ତକୋଇଲି, କଟକ-୭୫୪୨୦୭*



**ସାଗର ସୌରଭ ମହାନ୍ତି,** ସପ୍ତମ ଶ୍ରେଣୀ, ସରସ୍ୱତୀ ଶିଶୁ ମନ୍ଦିର, ଆନନ୍ଦପୁର

---

**ସା. ଜ୍ଞାନ ପରୀକ୍ଷାର ଉତ୍ତର :–** ୧) ସୁପ୍ରିମ କୋର୍ଟର ପ୍ରଧାନ ବିଚାରପତି, ୨) ୟୁକ୍ଲିଡ୍, ୩) ମଦନ ମୋହନ ମାଲବ୍ୟ, ୪) ଜବାହରଲାଲ ନେହେରୁ, ୫) ଜିତେନ୍ଦ୍ର ହରପାଲ ଓ କ୍ରିଷ୍ଣା ପଟେଲ, ୬) ୧୯୪୯, ୭) ୨୦.୪.୨୦୧୪, ୮) ବିନୋଦ କାନୁନ୍‌ଗୋ, ୯) ଭୀମରାଓ ଆମ୍ବେଦକର, ୧୦) ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍, ୧୧) ବଳଦେବ, ୧୨) ସାମବେଦ ।



ଜୀବନର ଅସଲ ପରୀକ୍ଷା ଆରମ୍ଭ ହୁଏ, ଯେତେବେଳେ ଏ ବିରାଟ ସଂସାର ଭିତରେ ମନୁଷ୍ୟକୁ ତା ଛୋଟ 'ସଂସାର'ଟି ଚଳେଇବାକୁ ପଡ଼େ । କିନ୍ତୁ ଏଇ ଶେଷ ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ତାକୁ ଯେତେ ପରୀକ୍ଷାର ଅର୍ଗଳି ଭିତର ଦେଇ ଯିବାକୁ ହେଉଛି, ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । ଆଦିମ ମଣିଷର ଜୀବନ ସରଳ ଥିବାରୁ ତାକୁ ଏତେ ପରୀକ୍ଷା ଦେବାକୁ ପଡୁ ନ ଥିଲା । କିନ୍ତୁ ସଭ୍ୟତାର ଶିଡ଼ିରେ ଚଢ଼ି ସେ ଯେତେ ଉପରକୁ ଉଠିଲା, ତା ଜୀବନ ସେତିକି ଜଟିଳ ହେଲା ଏବଂ ତା ପରୀକ୍ଷାର ସଂଖ୍ୟା ଓ ପ୍ରକାର ସେତିକି ବଢ଼ିଲା । ବିଂଶ ଶତାବ୍ଦୀର ଶେଷ ବେଳକୁ ଆମର ପୁଅଝିଅମାନେ ସ୍କୁଲ କଲେଜରେ ଯାହା ତ ପରୀକ୍ଷା ଦେଉଛନ୍ତି, ତା ସାଙ୍ଗକୁ ଆଉ ଏକ ପରୀକ୍ଷା ଯୋଗ କରାଯାଇଛି, ଯାହାର ନାମ 'ପ୍ରବେଶ ପରୀକ୍ଷା' (Entrance Test)

ସାଧାରଣ ଶିକ୍ଷା ଶେଷରେ ପୂର୍ବେ ଯେପରି ପାସ୍ କରିଥିବା ପିଲାମାନଙ୍କୁ ଚାକିରି ମିଳିଯାଉଥିଲା, ଏବେ ସେ ଅବସ୍ଥା ଆଉ ନାହିଁ । ତେଣୁ ଅନେକ ପିତାମାତା ସେମାନଙ୍କର ପିଲାଙ୍କୁ କୌଣସି ବୈଷୟିକ ଶିକ୍ଷାନୁଷ୍ଠାନରେ ପଢ଼ାଇବାକୁ ଇଚ୍ଛା କରୁଛନ୍ତି । କିନ୍ତୁ ପଠନେଚ୍ଛୁ ପିଲାଙ୍କ ସଂଖ୍ୟାକୁ ଚାହିଁ ଆବଶ୍ୟକ ଅନୁଷ୍ଠାନ ଏ ଦେଶରେ ନାହିଁ । ଏ ସମସ୍ୟା ଯୋଗୁ 'ପ୍ରବେଶ ପରୀକ୍ଷା'ର ସୃଷ୍ଟି । ଘରେ ନ ପଶୁଣୁ ଚାଳ ବାଜିବା ପରି ଏ ପରୀକ୍ଷା ପିଲା ଓ ସେମାନଙ୍କର ପିତାମାତାଙ୍କ ମନରେ ଆତଙ୍କ ସୃଷ୍ଟି କରୁଛି ।

ଏସବୁ ପ୍ରବେଶ ପରୀକ୍ଷା ପାଇଁ ପ୍ରସ୍ତୁତି ଯେଭଳି କଠୋର, 'କୋଚିଂ'ର ବ୍ୟବସ୍ଥା ସେହିଭଳି ବ୍ୟୟସାପେକ୍ଷ । ମୋଟା ଅଙ୍କର ବିପୁଳ ପରିମାଣ ଅର୍ଥ ଚାନ୍ଦାସ୍ୱରୂପ ଦେଇ ପୂର୍ବେ କେହି କେହି ଘରୋଇ ଅନୁଷ୍ଠାନମାନଙ୍କରେ ସ୍ଥାନ ପାଇପାରୁଥିଲେ; କିନ୍ତୁ କ୍ରମେ ପ୍ରତିଯୋଗିତା ତୀବ୍ର ହେଉଥିବାରୁ ଏବେ ତାହା ମଧ୍ୟ ସହଜ ହେଉନାହିଁ । ଯେତେ ଚାନ୍ଦା ଦେଲେ ସୁଦ୍ଧା ପୂର୍ବ ପରୀକ୍ଷାମାନଙ୍କରେ ଭଲ ନମ୍ବର ରଖିଥିବା ପିଲାଙ୍କୁ ହିଁ ସେଠାରେ ସ୍ଥାନ ମିଳୁଛି ।

ଆଉ ଟିକିଏ ତଳ ସ୍ତରକୁ ଖସିଲେ ଏ ପ୍ରବେଶ ପରୀକ୍ଷାର ଅଭିନୟ ଦେଖିବାକୁ ମିଳିବ ଚତୁର୍ଥ, ଷଷ୍ଠ ଓ ଅଷ୍ଟମ ଶ୍ରେଣୀମାନଙ୍କରେ । ପାଠ୍ୟବର୍ଷ ଆରମ୍ଭ ବେଳକୁ ହଜାର ହଜାର ବାଳକ ବାଳିକା ଏହି ଅଗ୍ନିପରୀକ୍ଷାର ସମ୍ମୁଖୀନ ହୁଅନ୍ତି । ସେଥିପାଇଁ ପିତାମାତାଙ୍କର ଯେଉଁ ଉଦ୍‌ବେଗ, ଯେଉଁ ଭାଳେଣି, ଟିଉସନ୍ ମାଷ୍ଟରଙ୍କୁ ଯେଉଁ ଅନୁସରଣ, ତାହାର ସୀମା ନାହିଁ । ଯେ ଉତ୍ତୀର୍ଣ୍ଣ ହେଲେ ସେ ବଡ଼ ବଡ଼ ସ୍କୁଲରେ ସ୍ଥାନ ପାଇଲେ, ଯେ ନହେଲେ ସେ ଖୋଜି ବୁଲିଲେ ପାର୍ଶ୍ୱ ଦେବତାଙ୍କୁ । ସେଠାରେ ଭିଡ଼ ଟିକିଏ କମ୍ । ତେଣୁ କୌଣସିମତେ ସେଠାରେ ସ୍ଥାନ ମିଳିଗଲେ ରକ୍ଷା ପାଆନ୍ତି ପିତାମାତା ।

କନ୍‌ଭେଣ୍ଟ, ନର୍ସରୀ ଓ ପବ୍ଲିକ୍ ସ୍କୁଲମାନଙ୍କରେ ଏହି 'ପ୍ରବେଶ ପରୀକ୍ଷା'ର ପ୍ରତାପ ଆହୁରି ବେଶି । ବଡ଼ ବଡ଼ ସହରମାନଙ୍କରେ ଧନୀ ଲୋକମାନଙ୍କର ଛୋଟ ଛୋଟ ପିଲା ସେଠାରେ ପଢ଼ିବାକୁ ଯାଆନ୍ତି । ସେଠି ମଧ୍ୟ ସେଇ ସମସ୍ୟା– ସ୍ଥାନ ଅଳ୍ପ, ପ୍ରାର୍ଥୀ ଅନେକ । ତେଣୁ ପରୀକ୍ଷା କରି ବାଛି ବାଛି ଛାତ୍ରଛାତ୍ରୀ ଗ୍ରହଣ କରିବାକୁ ପଡ଼େ । ବିଚରା ତିନିଚାରି ବର୍ଷର ଶିଶୁ, ସେ

ଧୂଳିଖେଳରେ ରତ ରହିବା କଥା, ତା ପାଇଁ ୧୬ପୃଷ୍ଠାର 'ଗାଇଡ୍' ବହିମାନ ପ୍ରସ୍ତୁତ ହେଲାଣି, ଯାହାକୁ ପଢ଼ି ପିତାମାତା ଓ ଶିକ୍ଷକ ଶିଶୁଙ୍କୁ 'ପ୍ରବେଶ ପରୀକ୍ଷା' ପାଇଁ ପ୍ରସ୍ତୁତ କରିବେ ।

ନର୍ସରୀ ସ୍କୁଲର ପରୀକ୍ଷକ ଶିଶୁକୁ ଗୀତଟିଏ ଗାଇବାକୁ କହିବେ । ସେ ଯଦି ଲାଜ କରି ବା ଭୟ କରି ପାଟି ନ ଫିଟାଇଲା, ତେବେ ତା ପଥ ରୁଦ୍ଧ । ଚାରି ପାଞ୍ଚଟି ବାକ୍ୟରେ ଗପଟିଏ ଶୁଣାଇ ସେଥିରୁ ପରୀକ୍ଷକ ପ୍ରଶ୍ନ ପଚାରିବେ । ନଡ଼ିଆ ତେଲ, ଡେଟଲ୍, ଭିକ୍ସ ଶିଶୁ ଆଗରେ ରଖାଯିବ; ତାକୁ ଶୁଂଘି ସେ କହିବ କିଏ କି ଜିନିଷ । ଥରେ ଜଣେ ପରୀକ୍ଷକ ଶିଶୁ ଆଗରେ କେତୋଟି ଚକ୍‌ଲେଟ୍ ରଖି ତାକୁ ଖାଇବାକୁ କହିଲେ । ପିଲାଟି ବିଚରା ଦୁଇଟି ଚକ୍‌ଲେଟ୍ ଉଠାଇ ଆଣିଲା, ମାତ୍ର 'ଧନ୍ୟବାଦ' 'Thank you' ନ କହିବାରୁ ତା' ପ୍ରବେଶ ପ୍ରସ୍ଥାନରେ ପରିଣତ ହେଲା ।

ତିନି ଚାରିବର୍ଷ ନ ପୂରୁଣୁ ପିଲା ଏହିପରି 'ପ୍ରବେଶ ପରୀକ୍ଷା' ଦେଇ ଦେଇ ଚାଲିଛି ଦରବୁଢ଼ା ହେବା ଯାଏଁ । ତା ବାଦ୍ ଅସଲ ପରୀକ୍ଷା ତ ଅଛି । ସବୁଠାରୁ ବଳି ଦୁଃଖର ବିଷୟ ଯେ 'ପ୍ରବେଶ ପରୀକ୍ଷା'ରେ ଭାଗ୍ୟବାନଙ୍କ ଅପେକ୍ଷା ଭାଗ୍ୟହୀନଙ୍କ୍ ସଂଖ୍ୟା ବହୁଗୁଣ ବେଶି ।

ଉଚ୍ଚସ୍ତରୀୟ ପ୍ରବେଶ ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ ବିଦ୍ୟାର୍ଥୀ ପାଇଁ କିଛି ହେଲେ ବିକଳ୍ପ ପନ୍ଥା ଅଛି; କିନ୍ତୁ ଛୋଟ ଶିଶୁମାନଙ୍କୁ ଏ ଅଗ୍ନିପରୀକ୍ଷାର ସମ୍ମୁଖୀନ କରାଇବା ନିଷ୍ଠୁରତା ନୁହେଁ କି ? ଯେଉଁ ପିଲାମାନେ ପାଠ ପଢ଼ିବାର ମଧୁର ସ୍ୱପ୍ନ ନେଇ ବିଦ୍ୟାଳୟର ନୂତନ ଅଭିଜ୍ଞତା ଅର୍ଜନ କରିବାକୁ ପିତାମାତାଙ୍କ ସାଙ୍ଗରେ ସଜବାଜ ହୋଇ ବାହାରିଥାନ୍ତି, ପ୍ରବେଶ ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇ ଫେରିବାବେଳେ ସେମାନଙ୍କ ମନରେ କି ଦାରୁଣ ଆଘାତ ଲାଗୁଥିବ, ତାହା ଯେ ବୁଝି ନ ପାରେ, ସେ ଶିକ୍ଷାବିତ୍ ନୁହେଁ ।

ଆମେ ନିୟମ କରିଛୁ ଯେ ଏ ଦେଶରେ କୌଣସି ପିଲା ମୂର୍ଖ ରହିବେ ନାହିଁ । ପ୍ରତ୍ୟେକ ପିଲାଙ୍କୁ ସମାନ ସୁବିଧା ସୁଯୋଗ ଦିଆଯିବ । ତେବେ ପ୍ରାଥମିକ ସ୍ତରରେ ଭଳି ଭଳି ବିଦ୍ୟାଳୟ ରହିଛି କାହିଁକି ? ଧନୀ ପିଲାଙ୍କ ପାଇଁ 'ଇଂରାଜୀ ମାଧ୍ୟମ ବିଦ୍ୟାଳୟ' ରଖିବାର ଉଦ୍ଦେଶ୍ୟ କ'ଣ ? କେହି ହୁଏତ କହିପାରନ୍ତି– ସେଠାରେ ଉତ୍ତମ ଶିକ୍ଷା ଓ ଶୃଙ୍ଖଳା ଶିକ୍ଷା ଦିଆଯାଏ । ତା ଯଦି ସତ୍ୟ ହୁଏ, ତେବେ ଦେଶର ଅବଶିଷ୍ଟ ଶିଶୁମାନଙ୍କୁ ସେଥିରୁ ବଞ୍ଚିତ କରାଯିବା ଉଚିତ କି ? ସେଠାରେ ଏଡ଼େ କଠୋର 'ପ୍ରବେଶ ପରୀକ୍ଷା'ର ବ୍ୟବସ୍ଥା କାହିଁକି କରାଯାଇଛି ? ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କୁ ପଚାରିଲେ ସେମାନେ ହୁଏତ କହିବେ, "ଯେତେବେଳେ ଯଥେଷ୍ଟ ସଂଖ୍ୟାରେ ଯାଆଁଳ ମିଳୁଛନ୍ତି, ଆମେ ବାଛି ବାଛି ସୁସ୍ଥ ସତେଜ-ମାନଙ୍କୁ ନେଇ ପୋଖରୀରେ ଛାଡ଼ିବୁ ନାହିଁ କାହିଁକି ?"

ସେମାନଙ୍କର ଯୁକ୍ତି ଠିକ୍ ହୋଇପାରେ, କିନ୍ତୁ ଏହା ଗଣତନ୍ତ୍ର ଓ ସମାଜବାଦୀ ରାଷ୍ଟ୍ରର ବିଚାର ନୁହେଁ । ପ୍ରାଥମିକ ସ୍ତରରେ ନବେ ଜଣଙ୍କୁ ଛାଡ଼ି ଦେଇ ଦଶଜଣଙ୍କୁ ବାଛିନେବା ବିଜ୍ଞତା ନୁହେଁ । ଯେଉଁମାନଙ୍କୁ ଆମ ମାନ କାଠିରେ ମାପି ଅଯୋଗ୍ୟ ବୋଲି ଆମେ ପଛକୁ ଠେଲିଦେଉଛୁ, ସେମାନଙ୍କ ଭିତରେ ଯେ ପ୍ରଚ୍ଛନ୍ନ ପ୍ରତିଭା ନ ରହିଛି, କିଏ କହିବ ? ଏଡିସନ୍ ଓ ଆଇନ୍‌ଷ୍ଟାଇନ୍ ତ ପୁଣି ପିଲାଦିନେ ମେଧାବୀ ଛାତ୍ର ଭାବେ ଗଣା ହେଉ ନ ଥିଲେ !

ଉଚ୍ଚ ଶିକ୍ଷାନୁଷ୍ଠାନରେ ପ୍ରବେଶ ପାଇଁ ବଛାବଛି ପରୀକ୍ଷା କରିବା ଯୁକ୍ତିସଙ୍ଗତ ହୋଇପାରେ, ମାତ୍ର ଛୋଟ ପିଲାଙ୍କ ପାଇଁ ଏ ପରୀକ୍ଷା ଉପଯୋଗୀ ତ ନୁହେଁ, ବରଂ ଅନ୍ୟାୟ । ଏ ପ୍ରସଙ୍ଗରେ ଆମେରିକାର ଜଣେ

ଯୋଗଜନ୍ମା ପୁରୁଷ ବୁକାର ଟି. ଓ୍ୱାଶିଂଟନଙ୍କ ପିଲାଦିନ କଥା ଲେଖାଯାଇପାରେ । ସେ ଥିଲେ ନିଗ୍ରୋ । ତାଙ୍କୁ ସାତବର୍ଷ ହେବା ପର୍ଯ୍ୟନ୍ତ ସେ ପାଠ ପଢ଼ି ନ ଥିଲେ । ସାବତବାପାଙ୍କ ସହିତ ଲୁଣଚୁଲୀରେ ତାଙ୍କୁ କାମ କରିବାକୁ ପଡୁଥିଲା; କିନ୍ତୁ ତାଙ୍କର ଦୁର୍ବାର ଇଚ୍ଛା ଥିଲା ପାଠ ପଢ଼ିବାକୁ ।

ଦିନେ ସେ ଶୁଣିଲେ ଭର୍ଜିନିଆର ହାମ୍ପଟନ୍‌ଠାରେ ନିଗ୍ରୋ ପିଲାଙ୍କ ପାଇଁ ଏକ ବଡ଼ ସ୍କୁଲ ଖୋଲାଯାଇଛି । ସେ ସ୍ଥିର କଲେ ସେଇଠାକୁ ଯାଇ ପାଠ ପଢ଼ିବେ; ମାତ୍ର ଯିବେ କେମିତି ? ହାତରେ ଧନ ନାହିଁ, ପୁଣି ଆଠ ଶହ କିଲୋମିଟର ଦୂର । ହେଲେ ସୁଦ୍ଧା ଦୁଇ ବର୍ଷର ରୋଜଗାର ସଞ୍ଚୟ କରି ବାଳକ ବୁକାର, ହାମ୍ପଟନ୍ ଯାତ୍ରା କଲେ ।

ବଗି ଗାଡ଼ିରେ, ଶଗଡ଼ରେ, କେଉଁଠି ବା ପାଦରେ ଚାଲି ଚାଲି ସେ ସେଇ ଲକ୍ଷ୍ୟସ୍ଥଳରେ ପହଞ୍ଚିଲେ । ପଥଶ୍ରମ ଓ ଅନଟନ ହେତୁ ତାଙ୍କ ଚେହେରା ଓ ବେଶପୋଷାକ ମଇଳା ଦିଶୁଥାଏ । ସେହି କାରଣରୁ ସେ ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀ ତାଙ୍କୁ ନେବାକୁ ପ୍ରଥମେ ମନା କରିଦେଲେ । ବୁକାରଙ୍କୁ ଚତୁର୍ଦିଗ ଅନ୍ଧାର ଦେଖାଗଲା । କିଛି ସମୟ ଅପେକ୍ଷା କଲାପରେ ଶିକ୍ଷୟିତ୍ରୀ ତାଙ୍କୁ ଝାଡୁ ଖଣ୍ଡେ ଦେଇ ଘରଟିକୁ ସଫା କରିବାକୁ କହିଲେ । ବୁକାର ସେ ଘରଟିକୁ ଖଣ୍ଡେ କନାରେ ତିନିଥର ପୋଛାପୋଛି କରିବା ପରେ ଶିକ୍ଷୟିତ୍ରୀ ତାଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ କହିଲେ, "ଆଚ୍ଛା, ତୁମକୁ ନିଆଯାଇପାରେ ।"

ଏହିପରି ଭାବରେ ବୁକାର ତାଙ୍କ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ ବିଦ୍ୟାଳୟରେ ଭର୍ତ୍ତି ହୋଇଥିଲେ । ଯେ ପଢ଼ିବା ପାଇଁ ଅନ୍ୟ କେଉଁଠି ସ୍ଥାନ ନ ପାଇବାରୁ ଆଠଶହ କିଲୋମିଟର ପଥଶ୍ରମ କରି ଆସିଛି, ସେ ପିଲାକୁ ଯଦି 'ପ୍ରବେଶ ପରୀକ୍ଷା'ର ସମ୍ମୁଖୀନ ହେବାକୁ ପଡ଼େ, ତେବେ ଏହାଠାରୁ ନିଷ୍ଠୁର ଶିକ୍ଷାନୀତି ଆଉ କଣ ଅଛି ?

ସେ ଯେ ପାଠ ପଢ଼ିବା ପାଇଁ ଏତେ ଦୂରରୁ ଆସିପାରିଛି, ଏହା ହିଁ କଣ ତାର ଯୋଗ୍ୟତାର ଯଥେଷ୍ଟ ପ୍ରମାଣ ନୁହେଁ ? (ପୁରୁଣା ସଂସାର ପୃଷ୍ଠାରୁ)

**ରାମକୃଷ୍ଣ ନନ୍ଦ**

---

**ବୁଦ୍ଧି ପରୀକ୍ଷାର ଉତ୍ତର–** ୧ । ଗ) ୫କି.ମି । ୪ କି.ମି ବେଗ ଓ ପାଞ୍ଚ କିଲୋମିଟର ବେଗ ମଧ୍ୟରେ କି.ମି. ପ୍ରତି ୩ମିନିଟ୍ (୧୫ମି-୧୨ମି) ତଫାତ୍ ରହିଛି । ଦୁଇ ବେଗ ମଧ୍ୟରେ ମୋଟରେ ୧୫ମିନିଟ (୫ମି+୧୦ମି) ତଫାତ୍ ଥିବାରୁ ମୋଟ ଦୂରତା ୧୫ / ୩ ବା ୫ କି.ମି. ।

୨ । ଘ) ଅଧେ ଗାତ ଖୋଳାଯାଇ ପାରିବ ନାହିଁ । ଗଭୀର ବା ଚଉଡ଼ା ଯେତେ କମ୍ ହେଉନା କାହିଁକି, ତାହା ଗୋଟିଏ ଗାତ ହେବ; ଅଧେ ଗାତ ନୁହେଁ ।

୩ । (୬) କାରଣ ସଂଖ୍ୟାଗୁଡ଼ିକୁ ଦେଖିଲେ ଜାଣିହେବ ୬ର ଦୁଇଗୁଣ ୧୨ ଓ ୨୩ ଯୁକ୍ତ ୫ ହେଉଛି ୧୪ର ଦୁଇଗୁଣ । ତେଣୁ ୨୯ଟା ନିଆରା ପଡ଼ିଯାଉଛି ।

୪ । ଗ) ସରସଟୁ– କାରଣ ସ–କ, ଓ ର– ଟ ଭଳି ବ୍ୟବହୃତ ହୋଇଛି ।

୫ । ଗ) ୨୦ । ପ୍ରଥମ ସଂଖ୍ୟାରୁ ଦ୍ୱିତୀୟଟି ଫେଡ଼ିଲେ ପିତାଙ୍କ ବୟସ ବାଦ ପଡ଼ିଯିବ ଓ ମାତାଙ୍କ ବୟସରୁ କନ୍ୟାର ବୟସ କଟିଯିବ । ତେଣୁ କନ୍ୟାଜନ୍ମ ସମୟର ମାତାଙ୍କ ବୟସ ମିଳିଯିବ ।

୬ । ଗ) ଅର୍ଥାତ୍ ଦଉଡ଼ିଟି କୌଣସି ଖୁଣ୍ଟ ବା କଣ୍ଟାରେ ବନ୍ଧା ହୋଇ ନଥିବ ।

ଅନ୍ତିଓଣା

ଶ୍ରୀ କାହ୍ନୁ ନାରାୟଣ ମହାନ୍ତି

## ପ୍ରଖ୍ୟାତ ମଞ୍ଚ ଅଭିନେତା ଅସୀମ ବସୁ

ସେଭଳି ମଣିଷ ଆଉ ମିଳିବେନି । ଯିଏ ଆରମ୍ଭରୁ ଚିତ୍ରମନସ୍କ ଥିଲେ; କିନ୍ତୁ ଚିତ୍ର ସହିତ ନାଟକର ବିଚିତ୍ର ଦୁନିଆଁ ଓ ବିବିଧ ବିଭାଗରେ କିଛି ନୂଆ ଛୁଆଁ ଦେଇ ସେ ଚାଲିଗଲେ ।

ବୟସ କଥା ସେ ଭୁଲିଯାଇଥିଲେ । ରୋଗ ତାଙ୍କୁ ଶୁଆଇଦେଲା । ଦୀର୍ଘ ଜୀବନର ସଫଳତାକୁ ଅତି ଅଳ୍ପରେ କହିଲେ– ଓଡ଼ିଶାର ଜଣେ ସୁପୁତ୍ର ତଥା ନାଟ୍ୟ ଓ ଚିତ୍ର ଜଗତର ବିନ୍ଧାଣୀଙ୍କୁ ଆମେ ହରାଇଲୁ ।

ଭୁବନେଶ୍ୱରର ରବୀନ୍ଦ୍ର ମଣ୍ଡପ କହିଲେ ଅବା ନାଟକ ମଞ୍ଚସ୍ଥ ହେବା ପାଇଁ ସଫଳ ପ୍ରୟାସଟିଏ ଥିଲେ– ପ୍ରଥମେ ମନକୁ ଆସୁଥିଲେ ଅସୀମଦାଦା, ଓରଫ 'ଦାଦା' । ସେ 'ଦାଦା' ଭାବରେ ଚିତ୍ର ଓ ମଞ୍ଚ ଦୁନିଆଁର ଜଣେ ସ୍ୱାଭିମାନୀ ଓ ଲୋକପ୍ରିୟ ଶିଳ୍ପୀମଣିଷ ।

ଅସୀମପ୍ରେମୀମାନେ ତାଙ୍କୁ ଘର ମଣିଷ ବୋଲି ଭାବୁଥିଲେ । ଭଲମନ୍ଦରେ ତାଙ୍କର ପରାମର୍ଶ ନେଉଥିଲେ । ଏକାଧାରରେ ସେ ଥିଲେ ମଞ୍ଚସଜ୍ଜା,



ଅଭିନେତା, ନାଟ୍ୟ ନିର୍ଦ୍ଦେଶକ, ସ୍ତମ୍ଭକାର, କଳା ନିର୍ଦ୍ଦେଶକ, ସର୍ବୋପରି ଜଣେ ଚିତ୍ରକର ।

୨୦୦୦ରୁ ଅଧିକ ମଞ୍ଚନାଟକର ସେ ମଞ୍ଚସଜ୍ଜା ସହିତ ୫୦ରୁ ଅଧିକ ମଞ୍ଚ ନାଟକରେ ଅଭିନୟ ଓ ନିର୍ଦ୍ଦେଶନା ଦେଇଛନ୍ତି । ଅନେକ ଚଳଚ୍ଚିତ୍ରର ସେ କଳା ନିର୍ଦ୍ଦେଶକ ଥିଲେ । କେତେକ ଚଳଚ୍ଚିତ୍ରରେ ମଧ୍ୟ ଅଭିନୟ କରିଛନ୍ତି । ଆକାଶବାଣୀ କଟକର ସ୍ୱୀକୃତିପ୍ରାପ୍ତ ନାଟ୍ୟଶିଳ୍ପୀ ଭାବେ ସେ ବହୁ ବେତାର ନାଟକରେ ଅଭିନୟ କରିଛନ୍ତି । ମୋର ସୌଭାଗ୍ୟ ଯେ ଦାଦାଙ୍କ ସହିତ ମୁଁ କେତେକ ବେତାର ନାଟକରେ ଅଂଶଗ୍ରହଣ କରିବାର ସୁଯୋଗ ପାଇଛି । ଦାଦା ଜଣେ ସୁଲେଖକ । ସେ ସୁନ୍ଦର ଭାବରେ ଉପସ୍ଥାପନା କରିପାରନ୍ତି ସାନ ସାନ କଥା ।

ସ୍ତମ୍ଭକାର ଭାବରେ କୌଣସି କଲେଜ ଉତ୍ସବମାନଙ୍କରେ ଅତିଥି ହୋଇ ଯିବାର ସମସ୍ୟା ଏବଂ ରାଜଧାନୀ ଦିଲ୍ଲୀରେ ପ୍ରଗତି ମଇଦାନରେ ପ୍ରତି ବର୍ଷ ପ୍ରଜ୍ଞାପନ ମେଢ଼ ରାଜସମ୍ମାନ ପାଇଁ ପ୍ରସ୍ତୁତିର ବିଭିନ୍ନ ସମସ୍ୟା ଇତ୍ୟାଦି ଅନେକ କଥା ସେ ଭାବ ଓ ତତ୍ତ୍ୱଭିତ୍ତିକ କରି ଲେଖିପାରନ୍ତି । ଅନେକ କଳାକାର କିଛି କିଛି ନିଶା ଅବା ବଦଭ୍ୟାସର ବଶବର୍ତ୍ତୀ ହୋଇଥାନ୍ତି । ତାହାକୁ ସେ ବ୍ୟସ୍ତବିବ୍ରତ ସମୟର ସାହାରା ମନେକରିଥାନ୍ତି; କିନ୍ତୁ ସେହି ସାହାରା ତାଙ୍କୁ ଅସମୟରେ କାଳର କବଳକୁ ଟାଣିନିଏ । ଦାଦା ଧୂମପାନକୁ ବିଳାସ ମନେକରି ଫୁସ୍‌ଫୁସ୍ ରୋଗରେ ଶେଷନିଶ୍ୱାସ ତ୍ୟାଗ କଲେ ।

ତାଙ୍କର ଅନେକ କାମ ଅପୂର୍ଣ୍ଣ ରହିଗଲା । 'କମଳା' ନାମକ ଏକ ନାଟକକୁ ସେ ଅନୁବାଦ କରି ମଞ୍ଚସ୍ଥ କରିବାକୁ ଚାହିଁଥିଲେ । 'ସନାତନବାବୁ' ନାମକ ଏକ ପୁସ୍ତକକୁ ଧାରାବାହିକ ଭାବେ ପ୍ରକାଶ କରିବାକୁ ଚାହିଁଥିଲେ । 'ପ୍ରମେୟ'ରେ ପ୍ରକାଶିତ 'ସାନକୁହା' ସ୍ତମ୍ଭକୁ

ଏକତ୍ର କରି ଏକ ପୁସ୍ତକ ଭାବେ ଦେଖିବାକୁ ଚାହୁଁଥିଲେ ହେଲେ ତାଙ୍କର ସେ ଇଚ୍ଛା ଅପୂର୍ଣ୍ଣ ରହିଗଲା । ସେ ନାଟକରେ ନିମଜ୍ଜିତ ପୁରୁଷ, ନାଟ୍ୟ ସଂଗଠକ, ନାଟ୍ୟମଞ୍ଚର ପୁରୋଧା ତଥା ନାଟ୍ୟଜଗତର ଭୀଷ୍ମ ଭାବରେ ସମ୍ମାନାସ୍ପଦ ବ୍ୟକ୍ତି ଥିଲେ ।

କଟକ କଳାବିକାଶ କେନ୍ଦ୍ରର ନିର୍ମାତା ବାବୁଲାଲ ଦୋଷୀ ତାଙ୍କୁ ପ୍ରଥମେ ନାଟକ 'ତପସ୍ୱିନୀ' ନୃତ୍ୟନାଟିକା ପାଇଁ ମଞ୍ଚସଜ୍ଜାର ସୁଯୋଗ ଦେଇଥିଲେ ।

✤ କଳା ନିର୍ଦ୍ଦେଶକ ଓ ଅଭିନେତା ଭାବେ ଚଳଚ୍ଚିତ୍ର– ଇନ୍ଦ୍ରଧନୁର ଛାଇ, ଜୟ ମା ମଙ୍ଗଳା, ପର ଝିଅ ଘର ଭାଙ୍ଗେନା, ନୀରବ ଝଡ଼ ଇତ୍ୟାଦିରେ ତାଙ୍କର କୃତି ଅନନ୍ୟ ।

✤ ସେ 'ନାଟ୍ୟସମ୍ପର୍କିତ ବ୍ୟକ୍ତିମାନଙ୍କୁ ନେଇ ଅନୁଷ୍ଠାନ ଗଢ଼ିଲେ– 'ଉତ୍ତରପୁରୁଷ', 'ଏବଂ ଆମେ', 'ଏକାମ୍ର ଥିଏଟର୍', 'ରୂପକାର' । ସେଇ ବ୍ୟକ୍ତିମାନେ ମୁଖ୍ୟତଃ ଥିଲେ ବିଜୟ ମିଶ୍ର, ଗୌରୀଶ୍ୟାମ ମହାପାତ୍ର, ଶରତ ମହାନ୍ତି, ରାଇଚରଣ ଦାସ ଏବଂ ଆଉ ଅନେକ ।

✤ ନୂଆମାନଙ୍କୁ ପ୍ରେରଣା ଓ ସୁଯୋଗ ଦେବା ତାଙ୍କର ଧର୍ମ ।

ସେ କହନ୍ତି–ଜୀବନର ଶେଷ ପର୍ଯ୍ୟନ୍ତ ମଞ୍ଚକୁ ନେଇ ବଞ୍ଚିବି । ଯେତେଦିନ ବଞ୍ଚିଥିବି, ମଞ୍ଚରେ ନାଟକ କରୁଥିବି ।

✤ ସଙ୍ଗୀତଜ୍ଞ ରାମହରି ଦାସଙ୍କୁ ସେ ତାଙ୍କ ନାଁରେ ଥିବା 'ଅସୀମ ଫାଉଣ୍ଡେସନ୍'ର ଦାୟିତ୍ୱ ଦେଇଛନ୍ତି, ଯାହା ନାଟ୍ୟଜଗତର ବିଶିଷ୍ଟ ତଥା ପ୍ରତିଭାବାନ୍ ଶିଳ୍ପୀମାନଙ୍କୁ ପ୍ରୋତ୍ସାହିତ କରିବ ।

ଉପରୁ ତଳକୁ– ଇନ୍ଦ୍ରଧନୁର ଛାଇ, ଜୟ ମା ମଙ୍ଗଳା, ପର ଝିଅ ଘର ଭାଙ୍ଗେନା, ନୀରବ ଝଡ଼ ଚଳଚ୍ଚିତ୍ରର କେତେକ ଦୃଶ୍ୟ

ନାଟ୍ୟଜଗତର ଏହି ମହାନ୍ ପ୍ରତିଭା ଚିର ସ୍ମରଣୀୟ ହୋଇ ରହିବେ । ତାଙ୍କୁ ଅନେକ ସମ୍ମାନରେ ସମ୍ମାନିତ କରାଯାଇଛି । ସେ 'ପଦ୍ମ' ସମ୍ମାନ ପାଇବାର ଯୋଗ୍ୟ, ଓଡ଼ିଶାର ଗର୍ବ ଓ ସ୍ୱନାମଧନ୍ୟ ନାଟ୍ୟବିନ୍ଧାଣୀ ।

ଜନ୍ମ ତାଙ୍କର ୧୯୩୫ ମସିହା ନଭେମ୍ବର ୩୦ ତାରିଖ ବାଲେଶ୍ୱର ଭୋଗରାଇର କଖଡ଼ା ଗ୍ରାମରେ । ବାପା– ମୋତିଲାଲ୍ ଏବଂ ମା' ବିଜନ୍‌ବାଲା । ୧୯୬୨ ମସିହାରେ କଟକରେ ପେଣ୍ଟିଙ୍ଗ୍ ଶିକ୍ଷାରେ ଡିଗ୍ରୀ । ବାଲେଶ୍ୱର କଲେଜର ସ୍ନାତକ । ତାଙ୍କର ଦୁଇ ଝିଅ ଅତସୀ ଓ ଭାସ୍ୱତୀ । ପୁଅ ଗୌତମ । ସ୍ୱାମୀ ଗୀତା ବସୁ । ସେ ଲେଖିଛନ୍ତି– କଥାରେ କଥାରେ (ଆତ୍ମଜୀବନୀ), କ୍ୟାକ୍‌ଟସ୍‌ର ଫୁଲ (ଗଳ୍ପ), ଛୋଟ ବଡ଼ କଥା କହୁଁ ଇତ୍ୟାଦି ପୁସ୍ତକ ।

ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ ତଥା ଓଡ଼ିଶାର ବିଭିନ୍ନ ବର୍ଗର ବ୍ୟକ୍ତି ତଥା ଅସଂଖ୍ୟ ପ୍ରଶଂସକ ତାଙ୍କର ବିୟୋଗରେ ଶୋକ ପ୍ରକାଶ କରିଛନ୍ତି । ଶ୍ରୀପଞ୍ଚମୀ ଭଳି ପବିତ୍ର ଦିବସରେ ୮୩ ବର୍ଷ ବୟସରେ ସେହି ସାରସ୍ୱତ ସାଧକ ତାଙ୍କ ଚରଣରେ ଚିରନିଦ୍ରାରେ ଶୋଇଗଲେ । ତାଙ୍କ ଆତ୍ମା ଶାନ୍ତି ଲାଭ କରୁ ।

*ଆଶ୍ରମ, ଶ୍ରୀବିହାର କଲୋନୀ, କଟକ- ୭୫୩୦୦୮*

---

# ଅତିଶୟ ଗର୍ବ ଓ ଆତ୍ମବଡ଼ିମା

ଶ୍ରୀ ଜେନାମଣି ଲକ୍ଷ୍ମୀକାନ୍ତ

ସ୍ୱନାମଧନ୍ୟ ଚିସ୍ତ୍ରୀ ସନ୍ଥ ଶେଖ୍ ନିଜାମୁଦ୍ଦିନ୍ ଆଲିୟା ୧୨୩୮ ଖ୍ରୀଷ୍ଟାବ୍ଦରେ ଉତ୍ତରପ୍ରଦେଶର ବଦାୟୁଁରେ ଜନ୍ମଗ୍ରହଣ କରିଥିଲେ । ୧୬ ବର୍ଷ ବୟସରେ ସିଏ ଶିକ୍ଷାଲାଭ ନିମିତ୍ତ ବଦାୟୁଁ ଛାଡ଼ି ଦିଲ୍ଲୀସ୍ଥିତ ମୌଲାନା କମାଲୁଦ୍ଦିନ୍‌ଙ୍କ ପାଖକୁ ଯାଇଥିଲେ । ଶିକ୍ଷାଲାଭ /ଅଧ୍ୟୟନ ଉତ୍ତାରୁ ସିଏ ଶେଖ୍ ଫକୀରୁଦ୍ଦିନ୍ ଗଞ୍ଜ ଏ ଶଙ୍କରଙ୍କ ଶିଷ୍ୟ ହୋଇଯାଇଥିଲେ । ନିଜାମୁଦ୍ଦିନ୍ ଆଲିୟା ନିଜର ଅନୁଗାମୀ ଶିଷ୍ୟଙ୍କୁ ଚିସ୍ତ୍ରୀ ମତବାଦର ପ୍ରଚାର ଓ ପ୍ରସାରାର୍ଥେ ଭାରତର ବିଭିନ୍ନ କୋଣଅନୁକୋଣକୁ ପଠାଇଥିଲେ; ହେଲେ ନିଜେ ଜୀବନର ଶେଷଯାଏ ଦିଲ୍ଲୀରେ ଅବସ୍ଥାପିତ ଥିଲେ । ସରଳ ଓ ନିରାଡ଼ମ୍ବର ଜୀବନଯାପନ ଏବଂ ମାନବବାଦର କଲ୍ୟାଣାର୍ଥେ ମହତ ଓ ଉଦାରବାଦୀ ଚିନ୍ତନ ଥିଲା ତାଙ୍କ ଚରିତ୍ରର ଅନନ୍ୟ ବୈଶିଷ୍ଟ୍ୟ । ନିଜେ ଭିକ୍ଷୁ ଓ ଫକୀର ଜୀବନକୁ ଆପଣେଇ ନେଇଥିଲେ । ବାଦଶାହା ଏବଂ କ୍ଷମତାସୀନ ବ୍ୟକ୍ତିଙ୍କଠାରୁ ନିଜକୁ ସିଏ ସର୍ବଦା ନିରାପଦ ଦୂରତ୍ୱରେ ରଖୁଥିଲେ । ତାଙ୍କର ପାଖଲୋକଙ୍କ ଭିତରେ ଅନ୍ୟତମ ଥିଲେ ଅମୀର ଖୁସ୍ରୁ । ଶିଷ୍ୟ ଖୁସ୍ରୁଙ୍କ ପହୁଞ୍ଚ ଥିଲା ଆଲିୟାଙ୍କ 'ଖାନ୍‌କାହ' ଏବଂ ତତ୍‌କାଳୀନ ବାଦଶାହା ଗୟାସୁଦ୍ଦିନ ତୁଗଲକ୍‌ଙ୍କ ପର୍ଯ୍ୟନ୍ତ ।

ବାଦଶାହା ତୁଗଲକଙ୍କ ଶାସନକାଳ ୫ ବର୍ଷରେ ସୀମିତ ଥିଲେହେଁ, ଏହି ସମୟ ମଧ୍ୟରେ ସିଏ ଔରଙ୍ଗଲର କାକ୍‌ତୀୟ ରାଜାଙ୍କ ସହ ବଙ୍ଗଳାର ବିଦ୍ରୋହୀ ହାକିମଙ୍କୁ ଯୁଦ୍ଧରେ ପରାସ୍ତ କଲେ । ବହୁ ପ୍ରଶାସନିକ ସଂସ୍କାର ଓ ସୁଧାର, କୃଷି ବିକାଶ ପାଇ ଜଳସେଚନ ବ୍ୟବସ୍ଥା, ଡାକ ସରବରାହ ବ୍ୟବସ୍ଥାର ସୁଧାର ସମେତ ଜ୍ଞାନୀ ଓ ପଣ୍ଡିତ ଏବଂ ଧର୍ମପ୍ରବର୍ତ୍ତକଙ୍କର ସିଏ ଥିଲେ ଜଣେ ବଳିଷ୍ଠ

ପୃଷ୍ଠପୋଷକ । ଅମୀର-ଖୁସ୍ରୁଙ୍କ ସମେତ ଅନ୍ୟ କତିପୟ ପାଖଲୋକଙ୍କ ଜରିଆରେ ତୁଗଲକ 'ଖାନକାହ' ଆସିବା ପାଇଁ ଇଚ୍ଛାପ୍ରକାଶ କରିଥିଲେହେଁ ନିଜାମୁଦ୍ଦିନ୍ ବିନମ୍ରତାର ସହ ତାହା ପ୍ରତ୍ୟାଖ୍ୟାନ କରି ବସିଥିଲେ । ଏକଦା ସିଏ ଖୁସ୍ରୁଙ୍କୁ କହିଲେ, ''ଯଦି ବାଦଶାହା ତୋଗଲକ୍ ଜୋରଜବରଦସ୍ତ ମୋ ପାଖକୁ ଏଇ ଦ୍ୱାରଦେଇ ଅନୁପ୍ରବେଶ କରନ୍ତି; ତେବେ ପ୍ରସ୍ଥାନ ଦ୍ୱାର ଦେଇ ମୁଁ ବାହାରକୁ ଚାଲିଯିବି ବାଧହୋଇ ।" ତୁଗଲକ ଥିଲେ ଜିଦ୍‌ଖୋର ଏବଂ ଖୁସ୍ରୁଙ୍କୁ କହୁଥିଲେ– ତୁମେ ନିଜାମୁଦ୍ଦିନ୍‌ଙ୍କ ଅନୁଗତ ଶିଷ୍ୟ । ତମେ ଯଦି ତାଙ୍କୁ ମନାଇ ନ ପାର, ତେବେ ହୁଏତ ମୁଁ ତୁମ ପ୍ରତି ନାରାଜ ହୋଇଯାଇପାରେ ।

ଚତୁର ଓ ସ୍ଥିତପ୍ରଜ୍ଞ ଅମୀର ଖୁସ୍ରୁଙ୍କ ବକ୍ତବ୍ୟ ଥିଲା– "ଆପଣ ଅମଙ୍ଗ ହେଲେ ହୁଏତ ଜୀବନ ଯିବ; କିନ୍ତୁ ଆଲିୟା ନାରାଜ ହେଲେ; ମାନସମ୍ମାନ ଚାଲିଯିବ । ନିଜାମୁଦ୍ଦିନ୍ ଏଭଳି କର୍କଶ ଦୃଷ୍ଟିଭଙ୍ଗୀ ସଂପର୍କରେ ଅବଗତ ହେଲାକ୍ଷଣି; ବାଦ୍‌ଶାହା ତୁଗଲକ - ଦିଲ୍ଲୀଠାରୁ ଦୂରରେ ଥାଇ ମଧ୍ୟ ଆଲିୟାଙ୍କ 'ଖାନକାହ' ନଷ୍ଟ କରିଦେବା ପାଇଁ ହୁକୁମ୍‌ନାମା ଜାରି କରିବସିଲେ ।

ଦିଲ୍ଲୀର ତତ୍‌କାଳୀନ କୋତ୍‌ୱାଲ ସ୍ୱୟଂ ଆଲିୟାଙ୍କ ସମର୍ଥକ ଥିଲେ । ସିଏ ପ୍ରତ୍ୟହ ଆସି ଆଲିୟାଙ୍କୁ ତୁଗଲକ ଦିଲ୍ଲୀଠାରୁ କେତେ ଦୂରରେ ଡେରା ପକାଇଛନ୍ତି, ସେ ସଂପର୍କରେ ଅବଗତ କରାଇଥିଲେ– ଆଉ ଗୋଟିଏ ଦିନ ପରେ ବାଦଶାହା ଦିଲ୍ଲୀ ଫେରିବେ, ଏଣୁ ତା' ପୂର୍ବରୁ ତୁଗଲକ ହୁକୁମ୍‌ନାମା ମୋତେ ପାଳନ କରିବାକୁ ହେବ ।

କୋତଓ୍ୱାଲଙ୍କ ଠାରୁ ଏହା ଜାଣିବାକ୍ଷଣି ନିଜାମୁଦ୍ଦିନ୍‌ଙ୍କ ଦୃଢ଼ୋକ୍ତି ଥିଲା– "ଦିଲ୍ଲୀ ଏବେବି ଅପହଞ୍ଚ ଦୂରରେ । ଏଣୁ ନିର୍ବିକଳ୍ପ ଏବଂ ନିର୍ଭୟ ରୁହ ବସ୍ତ ।'' ଏହା ସତ୍ତ୍ୱେ ବିଚାରୀ କୋତଓ୍ୱାଲ ଆଲିୟାଙ୍କ ପାଖରେ ଯାଇ ପହଞ୍ଚିଲେ ଓ କହିଲେ– ମହାମନା ! ବାଦଶାହ କାଲି ପ୍ରତ୍ୟୁଷରେ ଦିଲ୍ଲୀ ଫେରୁଛନ୍ତି । ଆଲିୟା ପୁନଶ୍ଚ ଦୋହରାଇଥିଲେ, "ଏବେ ବି ଅପହଞ୍ଚ ଦୂରରେ ଦିଲ୍ଲୀ ।" ତ୍ରିକାଳଦର୍ଶୀ ସିଦ୍ଧପୁରୁଷ ଓ ସନ୍ଥବାଣୀ କେବେ ନିରର୍ଥକ ହୁଏନି । ସତକୁ ସତ ସେଇଦିନ ସନ୍ଧ୍ୟାବେଳେ ବିଜୁଳି ବେଗରେ ଖବର ପହଞ୍ଚିଲା ଯେ, ବାଦଶାହାଙ୍କ ସମ୍ବର୍ଦ୍ଧନାର୍ଥେ ନିର୍ମିତ ଏକ ବିଶାଳକାୟ ସ୍ୱାଗତ ତୋରଣ ଭୁଷୁଡ଼ି ପଡ଼ିବା ଯୋଗୁଁ ବାଦଶାହା ତୁଗଲକ ଦୁର୍ଘଟଣାଗ୍ରସ୍ତ ହୋଇ ଶେଷନିଃଶ୍ୱାସ ତ୍ୟାଗ କଲେ କ୍ଷମତାନ୍ଧ ନିଜ ପୁଅ ମହମ୍ମଦ ବିନ୍ ତୋଗଲକକୃତ ଷଡ଼ଯନ୍ତ୍ର ହେତୁ ।

ଖ୍ରୀ. ୧୩୨୪ରେ ନିଜାମୁଦ୍ଦିନ୍ ଆଲିୟାଙ୍କ ମହାପ୍ରୟାଣ ହୋଇଥିଲା । ଦିଲ୍ଲୀସ୍ଥିତ ତାଙ୍କ ସମାଧି (ମକବରା) ପୀଠ ଏକ ପ୍ରଖ୍ୟାତ ତୀର୍ଥସ୍ଥଳ ପାଲଟିଛି ଅଗଣିତ ଭକ୍ତ ଓ ଶ୍ରଦ୍ଧାଳୁଙ୍କର । ତାଙ୍କର ପବିତ୍ର ସ୍ମୃତିରେ– ଦିଲ୍ଲୀ ରେଳଷ୍ଟେସନ୍ ନାମିତ ଓ ପ୍ରଖ୍ୟାତ । ସେ ଥିଲେ ପ୍ରଥିତଯଶା ସନ୍ଥ, ବିଦ୍ୱାନ୍ ଓ ମାନବବାଦୀ ଧର୍ମପ୍ରଚାରକ । ସେ ଥିଲେ ଅହିଂସ ଓ ଶାନ୍ତିକାମୀ, ହିଂସା ଓ ପ୍ରତିଶୋଧକୁ ସିଏ ଆସୁରିକ ଆଚରଣ ବୋଲି ସର୍ବଦା ନାପସନ୍ଦ କରୁଥିଲେ । ତାଙ୍କର ଅମୃତବାଣୀ ଓ ଉପଦେଶାବଳୀ ଗ୍ରନ୍ଥ 'ରୁବାୟୀ ଦ୍ୟୁଲ ରୁବାଦ' ଯେଭଳି ଅତୁଲ୍ୟ, ସେଭଳି ବହୁ ଜନାଦୃତ ।

*୧୯୦ ସ୍ୱର୍ଣ୍ଣାଦ୍ରୀନୀଳୟ, ଲୁଇସ୍‌ରୋଡ଼, ଭୁବନେଶ୍ୱର-୧୪*

# ପୁସ୍ତକ ପରିଚୟ

**ଆମେ ପିଲା ଓ ଭଉଣୀଭାଇ**-- ଲେଖକ- **ଶ୍ରୀ ସୁନାମଣି ରାଉତ,** ରାଜାବଗିଚା, କଟକ-୯; ମୋବାଇଲ- ୯୪୩୭୧୯୨୮୯୦, ମୂଲ୍ୟ- ୧୫୦ ଟଙ୍କା ।

ପୁଣ୍ୟଭୂମି ଓଡ଼ିଶା, ଭଲପିଲା, ଆକାଶ ଦିଶେ କି ସୁନ୍ଦର, ଫୁଟିଲା ତରା ଇତ୍ୟାଦି ୨୫ଟି ଶିଶୁ କବିତାର ସମାହାର ହୋଇଛି ଏହି ଡିମେଇ ୧/୪ ପୁସ୍ତକଟିରେ । ଚିତ୍ର ରଂଗିନ୍ ହେବା ସହ ଖୁବ୍ ବଡ଼ ବଡ । ପ୍ରତି ପୃଷ୍ଠାରେ ଏହା ଶୋଭାବର୍ଦ୍ଧନ କରୁଛି । କବିତାଗୁଡ଼ିକ ବେଶ୍ ସରଳ ଓ ବୋଧଗମ୍ୟ ହୋଇପାରିଛି । ରଂଗିନ୍ ପ୍ରଚ୍ଛଦରେ ଛୋଟ ପିଲାମାନଙ୍କର ଚିତ୍ର ବେଶ୍ ମନୋମୁଗ୍ଧକର । ଶିଶୁ-ପାଠକମାନଙ୍କ ଦ୍ୱାରା ଏହା ଆଦୃତ ହେବାର ଆଶା ।

**ପାଳଭୂତ**-- ଲେଖକ- **ଶ୍ରୀ ମାଧବାନନ୍ଦ ପଣ୍ଡା,** ଏନ୍.ଭି-୩୩, କଷୋଟୀ, ପାଣ୍ଡିରୀ, କେନ୍ଦ୍ରାପଡ଼ା, ମୂଲ୍ୟ- ୫୦ଟଙ୍କା

ଫୁର୍‌ଫୁର୍ ଗଲେ ଉଡ଼ି, ପାନଖିଲ, ସ୍ୱଚ୍ଛ ଭାରତ, ସ୍ୱାସ୍ଥ୍ୟ ହିଁ ସମ୍ପଦ, ବେଙ୍ଗଧରା ଅଭିଯାନ ଇତ୍ୟାଦି ୪୨ଟି ଶିଶୁକବିତା ଏହି ଡିମେଇ ୧/୮ ଆକାରର ପୁସ୍ତକଟିରେ ସନ୍ନିବେଶିତ ।

ପ୍ରତ୍ୟେକ ପୃଷ୍ଠାରେ ଚିତ୍ର ରହିଛି ଶିଶୁମାନଙ୍କୁ ଆକର୍ଷିତ କଲାଭଳି । ଅଧିକାଂଶ କବିତା ଗଳ୍ପ ଭଳି ହୋଇଛି ଏବଂ ଶିକ୍ଷଣୀୟ ବିଷୟବସ୍ତୁ ରହିଛି । ସରଳ ଭାଷାରେ ଲିଖିତ ଏହି କବିତା ପୁସ୍ତକଟିର ରଂଗିନ୍ ପ୍ରଚ୍ଛଦରେ 'ପାଳଭୂତ'ର ଚିତ୍ର ଚମତ୍କାର ହୋଇଛି । ପୁସ୍ତକଟିର ପ୍ରଚାର ଓ ପ୍ରସାର କାମନା କରୁ ।

**ସତ୍ୟର ଜୟ**-- ଲେଖକ- **ଶ୍ରୀ ଫକୀର ଚରଣ ପାଢ଼ୀ,** ବକଡ଼ାବେଡ଼ା, ଡାବୁଗାଁ, ନବରଂଗପୁର, କୋରାପୁଟ, ମୂଲ୍ୟ- ୫୦ଟଙ୍କା

ଏହି ଡିମେଇ ୧/୮ ଆକାରର ପୁସ୍ତକଟିରେ ଅଭିଶାପର ଆଶୀର୍ବାଦ, ସୌଭାଗ୍ୟ ଓ ଦୁର୍ଭାଗ୍ୟ, ଧନ୍ୟବାଦ ଈଶ୍ୱର ଇତ୍ୟାଦି ୯ଟି ଶିକ୍ଷଣୀୟ ଗଳ୍ପ ରହିଛି, ଯାହାକି ଶିଶୁପାଠକମାନଙ୍କୁ ଆକର୍ଷିତ କରିବ । ପ୍ରତି ଗଳ୍ପରେ ସୁଦୃଶ୍ୟ ଚିତ୍ର ରହିଛି । ପ୍ରଚ୍ଛଦଟି ରଂଗିନ୍ ଓ ଆକର୍ଷଣୀୟ ।

---



୧।୨-- ବିଶିଷ୍ଟ ଅଭିନେତା, ନିର୍ଦ୍ଦେଶକ, ଚିତ୍ରଶିଳ୍ପୀ ତଥା ସାରସ୍ୱତ ସାଧକ ଅସୀମ ବସୁଙ୍କର ୮୨ ବର୍ଷରେ ପରଲୋକ ।

୪।୨-- ବିଶିଷ୍ଟ ସାମ୍ବାଦିକ ତଥା ସୁସଂଗଠକ ପ୍ରବୀର କୁମାର ସରକାରଙ୍କର ୭୯ ବର୍ଷରେ ପରଲୋକ । ସେ ମାତୃଭୂମି, ସମାଜ, ଓଡ଼ିଶା ଟାଇମସ୍ ଇତ୍ୟାଦିର ପ୍ରତିନିଧି ରୂପେ କାର୍ଯ୍ୟ କରିଥିଲେ ।

-- ପ୍ରବୀଣ ସାରସ୍ୱତ ସାଧକ ତଥା ଶିକ୍ଷାବିତ୍ ପଠାଣି ପଟ୍ଟନାୟକଙ୍କର ୮୯ ବର୍ଷରେ ପରଲୋକ ।

୫।୨-- ବିଶିଷ୍ଟ ପ୍ରକାଶକ ଓ ଫ୍ରେଣ୍ଡସ୍ ପବ୍ଲିସର୍ସର ପ୍ରତିଷ୍ଠାତା ସହଦେବ ପ୍ରଧାନଙ୍କର ୮୩ ବର୍ଷରେ ପରଲୋକ ଏବଂ ନାଳନ୍ଦା ପବ୍ଲିକେସନ୍‌ର ଉତ୍ତରାଧିକାରୀ କୃଷ୍ଣଚନ୍ଦ୍ର ସାହୁଙ୍କର ୯୪ ବର୍ଷରେ ପରଲୋକ ।

୭।୨-- ଓଡ଼ିଶା ଚଳଚ୍ଚିତ୍ରର ବିଶିଷ୍ଟ କଳା ନିର୍ଦ୍ଦେଶକ ବୁଢ଼ା ମହାରଣାଙ୍କର ୬୪ ବର୍ଷରେ ପରଲୋକ । ସେ ଶତାଧିକ ଚଳଚ୍ଚିତ୍ରରେ କଳା ନିର୍ଦ୍ଦେଶନା ଦେଇଥିଲେ ।

୧୦।୨-- ଓଡ଼ିଶା ହାଇକୋର୍ଟର ପ୍ରାକ୍ତନ ବିଚାରପତି ଜଷ୍ଟିସ୍ ବାଳକୃଷ୍ଣ ବେହେରାଙ୍କର ୯୨ ବର୍ଷରେ ପରଲୋକ ।

୧।୨-- ପୂର୍ବତନ କେନ୍ଦ୍ରମନ୍ତ୍ରୀ ଇ. ଅହମ୍ମଦଙ୍କର ପରଲୋକ ।

## ଶବ୍ଦଧନ୍ଦା - ମାର୍ଚ୍ଚ-୨୦୧୭

୧ । କାଗଜରେ ବା କାର୍ଡ଼ରେ ଘର କାଟି ଉତ୍ତର ଲେଖନ୍ତୁ ।

୨ । ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।

୩ । ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।

୪ । ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।

୫ । ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।

୬ । ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨ ।୩ ।୨୦୧୭

| | | | | | |
|---|---|---|---|---|---|
| ୧ ଦ | ୨ | ୩ | ❋ | ୪ ଲୁ | |
| | ୫ | ତା | ❋ | ୬ | ୭ ର |
| ରା | ❋ | ❋ | ୮ | ❋ | |
| ❋ | ୯ | ୧୦ | ଦ୍ୟ | ❋ | ❋ |
| ୧୧ | ଷ | | ❋ | ୧୨ | |
| ୧୩ | | ❋ | ୧୪ | ମ୍ପ | |

### ସୂଚନା

**ବାମରୁ ଡାହାଣ--** ୧ । ଅସୁରବିନାଶ ପାଇଁ ଏ ମୁନି ନିଜ ଦେହରୁ ଅସ୍ଥି ଦେଇଥିଲେ (୩), ୪ । ସୂତାବୁଣା ପରିଧେୟ ବିଶେଷ ( ୨ ), ୫ । ଏକ ଜାତିର ମାଛ ( ୨ ), ୬ । ଦୀର୍ଘକାଳ ( ୨ ), ୯ । ଦେବତାଙ୍କୁ ଦିଆଯିବା ଭୋଗ (୩), ୧୧ । ଗଦା ବା ମୁଦ୍‌ଗର (୩), ୧୨ । ଛାଇ ନିଦ ( ୨ ), ୧୩ । ଏକ ଭାରବାହୀ ପଶୁ ( ୨ ), ୧୪ । ପତିପତ୍ନୀ (୩) ।

**ଉପରୁ ତଳ--** ୧ । କାଠ ହାଣିବାକୁ ଏଭଳି କୁରାଢ଼ୀ ଉପଯୁକ୍ତ ନୁହେଁ (୩), ୨ । ଅଚଞ୍ଚଳ ( ୨ ), ୩ । ଗୋଟିଏ ହିଂସ୍ରଜନ୍ତୁ ( ୨ ), ୪ । ଘିଅରେ ଭଜା ମଇଦାପିଠା ( ୨ ), ୭ । କିରଣ ( ୨ ), ୮ । କେତେକ ଲୋକ ବିବାହ ଉତ୍ସବରେ ଏଇଟାକୁ ପସନ୍ଦ କରନ୍ତି ( ୨ ), ୯ । ଏକ ପ୍ରସିଦ୍ଧ ସଂସ୍କୃତ କାବ୍ୟ (୩), ୧୦ । ସମୟ ( ୨ ), ୧୧ । ରବିଶସ୍ୟ ବିଶେଷ ( ୨ ), ୧୨ । ଏକଜାତୀୟ ସାପର ନାମ ( ୨ ) ।

---

**ଫେବୃଆରୀ ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ପ୍ରାଣତ୍ୟାଗ, ୩ । ପରିବା, ୪ । ଶରଣାର୍ଥୀ, ୬ । ନିସ୍ପନ୍ଦ, ୮ । ସାବରମତି, ୧୧ । ପାରଦ, ୧୨ । ରମ୍‌ଜାନ, ୧୪ । ରାବଣ, ୧୫ । ଦାର, ୧୬ । ବସୁଧା, ୧୭। ସମ ।

**ଉପରୁ ତଳ--** ୧ । ପ୍ରାଙ୍ଗଣ, ୨ । ତ୍ୟାଜ୍ୟ, ବର୍ଜ୍ୟ, ୩ । ପରସ୍ପର, ୪ । ଶନି, ୫ । ବିବର, ଗହ୍ୱର, ୭ ।ସୋପାନ, ୯ । ବରଣ, ୧୦ । ମଜା, ୧୩ । ନରମ, ୧୪ । ରାବ, ୧୫ । ଦାସ ।

---

**ଗତମାସର ଠିକ୍ ଉତ୍ତରଦାତା- ରସାନନ୍ଦ ଘଡ଼େଇ,** ପୁଆଣିଆ, **ରାସେଶ୍ୱର ମହାନ୍ତ,** ଚମ୍ପୁଆ, କେନ୍ଦୁଝର; **ରାଜକିଶୋର ସାହୁ,** ଓଡଗାଁ, ନୟାଗଡ଼; **କୁମାର ଅଭିଜିତ ନାୟକ,** ପଞ୍ଚାୟତ ହାଇସ୍କୁଲ, ଅଣ୍ଟିଆ, ଜେନାପୁର; **ନିଶିକାନ୍ତ ବେହେରା ;** ବେଢ଼ାପଡ଼ା; ହିନ୍ଦୋଳ ରୋଡ, ଢେଙ୍କାନାଳ ।

# ପୃଥିବୀ କ୍ଷଣ-କ୍ଷଣକେ ଆନ

## ଓଡ଼ିଶା ଖବର

୨୨।୧-- ଜଗଦଳପୁର-ଭୁବନେଶ୍ୱର ହୀରାଖଣ୍ଡ ଏକ୍ସପ୍ରେସ୍ ଲାଇନ୍‌ଚ୍ୟୁତ ହେବାରୁ ୪୩ଜଣ ଯାତ୍ରୀ ମୃତ ଓ ଶହେରୁ ଅଧିକ ଆହତ ।

-- ଦେଶର ୨୫ଜଣ ଶିଶୁଙ୍କୁ ଜାତୀୟ ସାହସିକତା ପୁରସ୍କାର ପ୍ରଦାନ ଉତ୍ସବରେ ଓଡ଼ିଶାର ମୋହନ ସେଠୀ ଅନ୍ୟତମ ।

୨୫।୧-- ଓଡ଼ିଶାର କୃତବିଦ୍ୟ ଅଭିନେତା ସାଧୁମେହେର, ଓଡ଼ିଶୀ ନୃତ୍ୟଶିଳ୍ପୀ ଅରୁଣା ମହାନ୍ତି, ସମ୍ବଲପୁରୀ ଗାୟକ ଜିତେନ୍ଦ୍ରିୟ ହରିପାଲ ଓ ବିଶିଷ୍ଟ ଚିକିତ୍ସକ ମୁକୁଟ ମିଞ୍ଜଙ୍କୁ 'ପଦ୍ମଶ୍ରୀ-୨୦୧୭' ପ୍ରଦାନ । ଏଥିସହ ୮ଜଣ କ୍ରୀଡ଼ାବିତ୍ 'ପଦ୍ମଶ୍ରୀ' ପାଇଁ ମନୋନୀତ ।

୨।୨-- ଆସନ୍ତା ବର୍ଷ ରାଜ୍ୟର ୩୦ଟି ସ୍ଥାନରେ ଇଣ୍ଡିଆ ପୋଷ୍ଟ୍ ପେମେଣ୍ଟ୍ ବ୍ୟାଙ୍କ୍ (ଆଇପିପିବି) ଖୋଲା ହେବାର ନିଷ୍ପତ୍ତି ।

୩।୨-- ରେଳବାଇ କ୍ଷେତ୍ରରେ ଓଡ଼ିଶାକୁ ଚଳିତ ବର୍ଷ ପାଇଁ କେନ୍ଦ୍ରର ୫୧୦୨ କୋଟି ଟଙ୍କାର ସହାୟତା ଘୋଷଣା ।

## ଭାରତ ଖବର

୨୧।୧-- ଦିଲ୍ଲୀ ପୁଲିସ୍ କମିଶନର୍ ଆଲୋକ ବର୍ମା ସିବିଆଇର ମହାନିର୍ଦ୍ଦେଶକ ନିଯୁକ୍ତ ।

୨୨।୧-- ମେଘାଳୟର ରାଜ୍ୟପାଳ ଭି. ଷଣ୍ମୁଗନାଥମ୍‌ଙ୍କର ଏକ ବିବାଦୀୟ ପରିସ୍ଥିତିରେ ଇସ୍ତଫା ପ୍ରଦାନ ।

୨୮।୧-- ବିଜେପି ଓ ଶିବସେନା ମଧ୍ୟରେ ରହିଥିବା ଦୁଇ ଦଶନ୍ଧିର ସମ୍ପର୍କ ଛିନ୍ନ ।

୨୯।୧-- ସରକାରୀ ଚାକିରିରେ ସଂରକ୍ଷଣ ଦାବି କରି ଅଲ୍ ଇଣ୍ଡିଆ ଜାଠ ଆରକ୍ଷଣ ସଂଘର୍ଷ ସମିତିର ପୁନର୍ବାର ଆନ୍ଦୋଳନ ।

୩୦। ୧-- ଅବସରପ୍ରାପ୍ତ ଆଇଏଏସ୍ ତଥା ପୂର୍ବତନ ସିଏଜି ବିନୋଦ ରାୟ ବିସିସିଆଇର ଅଧ୍ୟକ୍ଷ ନିଯୁକ୍ତ ।

୧।୨--ସଂସଦରେ ୨୦୧୭-୧୮ ଆର୍ଥିକ ବର୍ଷ ନିମନ୍ତେ ରେଳ ପାଇଁ ୧,୩୧,୦୦୦ କୋଟିର ବ୍ୟୟ ବରାଦ । ମୋଟ ୨୧,୪୨,୭୩୫ କୋଟି ଟଙ୍କାର ବଜେଟ୍ ଉପସ୍ଥାପିତ ।

୨।୨-- ପ୍ରତିଷ୍ଠିତ ସୀତାର ବାଦକ ଓସ୍ତାଦ୍ ଇମାରତ୍ ଖାଁଙ୍କର 'ପଦ୍ମଶ୍ରୀ' ପୁରସ୍କାରକୁ ଅଗ୍ରାହ୍ୟ ।

୪।୨ --ଅର୍ଥନୀତିଜ୍ଞ ସଞ୍ଜୀବ ସାନ୍ୟାଲ ଅର୍ଥ ମନ୍ତ୍ରଣାଳୟର ପ୍ରମୁଖ ରାଜନୈତିକ ଉପଦେଷ୍ଟା ଭାବେ ଅବସ୍ଥାପିତ ।

୧୨।୨-- ବେଙ୍ଗାଲୁରୁରେ ଚାଲିଥିବା ଦୃଷ୍ଟିହୀନ ଟ୍ୱେଣ୍ଟି୨୦ ଟୁର୍ଣ୍ଣାମେଣ୍ଟରେ ପାକିସ୍ତାନକୁ ହରାଇ ଭାରତ ଚାମ୍ପିଅନ୍ ।

୧୪।୨-- ଶଶିକଳାଙ୍କୁ ୪ ବର୍ଷ କାରାଦଣ୍ଡ ଆଦେଶ ସହ ୧୦୦ କୋଟି ଟଙ୍କା ଜୋରିମାନା ଏବଂ ଦଶ ବର୍ଷ ନିର୍ବାଚନ ବାସନ୍ଦ ।

୧୫।୨ -- ନୂତନ କୀର୍ତ୍ତିମାନ୍ ରଚନା କରି ଶ୍ରୀହରିକୋଟାରେ ଥିବା ଉପଗ୍ରହ ଉତ୍କ୍ଷେପଣ କେନ୍ଦ୍ରରୁ ଥରକେ ୧୦୪ଟି ଉପଗ୍ରହର ସଫଳତାର ସହ ମହାକାଶକୁ ଯାତ୍ରା ।

୧୬।୨-- ଇଡ଼ାପାଡ଼ି କେ ପଲାନିସ୍ୱାମୀଙ୍କ ୧୨ଜଣିଆ ମନ୍ତ୍ରୀମଣ୍ଡଳ ସହ ତାମିଲ୍‌ନାଡୁର ମୁଖ୍ୟମନ୍ତ୍ରୀ ଭାବେ ଶପଥ ଗ୍ରହଣ ।

## ବିଦେଶ ଖବର

୨୯।୧-- ୟେମେନ୍‌ଠାରେ ଆମେରିକାର ସର୍ଜିକାଲ୍ ଷ୍ଟ୍ରାଇକ୍‌ର ୪୧ ଜଣ ସନ୍ଦିଗ୍ଧ ଆତଙ୍କବାଦୀ ମୃତ । ୮ ଶିଶୁ ଓ ୮ଜଣ ମହିଳା ମୃତ ଓ ଶତାଧିକ ଆହତ ।

୩୦।୧-- ଫ୍ରାନସ୍‌ର ସୁନ୍ଦରୀ ଆଇରିସ୍ ବିଟେନେରଙ୍କର ୨୦୧୬ ପାଇଁ 'ବ୍ରହ୍ମାଣ୍ଡ ସୁନ୍ଦରୀ' ଆଖ୍ୟା ଅର୍ଜନ ।

୨।୨-- ମୁସଲମାନବହୁଳ ୭ଟି ରାଷ୍ଟ୍ର ଉପରେ ଆମେରିକାର ଭିସା କଟକଣା ଜାରି ।

୪।୨-- ଆଫ୍‌ଗାନିସ୍ତାନର ନେତା ତଥା କୁଖ୍ୟାତ ଆତଙ୍କବାଦୀ କୁଲୁବୁଦ୍ଦିନ୍ ହେକ୍‌ମତ୍ୟାର୍ ଉପରୁ ଜାତିସଂଘ ସୁରକ୍ଷା ପରିଷଦର କଟକଣା ପ୍ରତ୍ୟାହାର ।

୧୨।୨-- ଜର୍ମାନୀର ପୂର୍ବତନ ବୈଦେଶିକ ମନ୍ତ୍ରୀ ଫ୍ରାଙ୍କ୍ ୱାଲଟ୍‌ର ଦେଶର ରାଷ୍ଟ୍ରପତି ଭାବେ ନିର୍ବାଚିତ ।

-- ଅଷ୍ଟ୍ରେଲିଆ ମହାଦେଶର ପୂର୍ବରେ ଅବସ୍ଥିତ ୫୦ଲକ୍ଷ ବର୍ଗ କିଲୋମିଟର ବିସ୍ତୃତ 'ଜିଲାଣ୍ଡିଆ' ମହାଦେଶ ଆବିଷ୍କୃତ । ପୃଥିବୀର ମହାଦେଶ ସଂଖ୍ୟା ୮କୁ ବୃଦ୍ଧି ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075